# ନିଜ କଥା

ମାଛ ଦୁଇ ଜାତିର—ଲୁଣି ଓ ମଧୁର । ଓଡ଼ିଶାରେ ଲମ୍ବା ସମୁଦ୍ରକୂଳ ଥିଲେ ମଧ୍ୟ ଓଡ଼ିଆମାନଙ୍କ ଭିତରୁ ଖାନ୍ଦ ବେଶିଭାଗ ଲୋକ ଲୁଣି ମାଛ ଖାଇବାକୁ ପାଆନ୍ତି ନାହିଁ ; ଆମେ ବେଶୀ ନିର୍ଭର କରୁ ମଧୁର ମାଛ ଉପରେ ।

ସମୁଦ୍ରରୁ ଲୁଣି-ମାଛ ଓ ନଈ ପୋଖରୀରୁ ମଧୁର-ମାଛ ପାଇଥାଉ । ସମୁଦ୍ରରେ ତ ମାଛଚାଷର ପ୍ରଶ୍ନ ଉଠୁ ନାହିଁ କି ଲୁଣି ମାଛଙ୍କୁ ଆଣି ପୋଖରୀରେ ବଢ଼ାଇବାର ସଫଳ ଉଦ୍ୟମ ହୋଇ-ନାହିଁ । ନଈରେ ଯଦିଓ ମଧୁର ମାଛ ଅଛନ୍ତି କେହି ଯତ୍ନ କରି ଯାଆଁଳ ଛାଡ଼ି ସେଥିରେ ମାଛ ବଢ଼ାଏ ନାହିଁ ବା ମାଛ ଚାଷ କରେ ନାହିଁ । ବଡ଼ ଛୋଟ ପୋଖରୀ ବା ବନ୍ଧ ମାନଙ୍କରେ ଆମ ଓଡ଼ିଶାରେ ମାଛ ପାଳନ୍ତି ।

ଆମ ପ୍ରଦେଶରେ ଯଦିଓ ବହୁପ୍ରକାରର ମାଛ ଅଛନ୍ତି ଓ ସେଗୁଡ଼ିକ ଭିତରୁ ଅନେକ ପ୍ରକାରର ଆମେ ଖାଉ, ଚାରି ଛ' ପ୍ରକାରର ମାଛଙ୍କୁହିଁ ପୋଖରୀରେ ଛାଡ଼ିବା ଲାଭଜନକ ଓ ନିରାପଦ । ସେହିମାନଙ୍କୁ ପାଳିବାଟାକୁ ହିଁ "ମାଛଚାଷ" ବୋଲି କୁହାଯାଏ । ଏ ବହିରେ କେବଳ ସେହି ଜାତିର ମାଛଙ୍କ କଥା କୁହା ଯାଇଛି । ବାଲିଆ, ଚିତଳ, ଶେଉଳ ପ୍ରଭୃତିଙ୍କ ବିଷୟରେ ଏଇଥିପାଇଁ ଲେଖିବାକୁ ପଡ଼ୁଛି ଯେ ସେଗୁଡ଼ିକ ହେଲେ ଭାକୁର, ରୋହି, ମିରିକାଳି ପ୍ରଭୃତିଙ୍କ ଶତ୍ରୁ ।

ଏ ବହିଟି ପଢ଼ିଲେ ମାଛ-ଚାଷ ବିଷୟରେ ଗୋଟାଏ ମୋଟାମୋଟି ଧାରଣା ଯେପରି ହୋଇ ପାରିବ ତା'ର ଉଦ୍ୟମ କରାଯାଇଛି ।

ଏଭଳି ଗୋଟିଏ ବହି ଲେଖିବା ଖୁବ କଷ୍ଟ ବୋଲି ମନେ ହେଉଥିଲା । କାରଣ ପୋଖରୀରେ ମାଛ ପାଳିବା ବିଷୟରେ ସାଧାରଣ ଲୋକେ ବୁଝିପାରିବା ଭଳି ସେଭଳି କିଛି ବହି ଓଡ଼ିଆ

ଧାର୍ମିକ ଭଂଗାଳରେ ମଧ୍ୟ ଜାଣିନାହାନ୍ତି ବୋଲି କହିଲେ ଚଳେ । ଆମ ଦେଶରେ ବୈଜ୍ଞାନିକମାନେ ଯେଉଁ ଗବେଷଣା ଚଳାଇଛନ୍ତି ତା'ର ଫଳାଫଳ ସାଧାରଣ ଲୋକଙ୍କ ପାଖରେ ପହଞ୍ଚି ନାହିଁ । ସେଥିପାଇଁ ହୁଏତ ସମସ୍ତ ଲାଗିବ । ତେଣୁ ବେଶ୍ ଅନୁମାନ କରାଯାଇପାରେ ଆମେ କି ଅସୁବିଧାରେ ପଡ଼ିଥିବୁ ।

ମତ୍ସ୍ୟ ବିଭାଗର ଉପମନ୍ତ୍ରୀ ଶ୍ରଦ୍ଧେୟ ଶ୍ରୀ ସାନ୍ତ୍ୱନୁକୁମାର ଦାସ ଯେତେବେଳେ ସାଧାରଣ ଲୋକଙ୍କ ପାଇଁ ବିଶେଷତଃ ଗାଁ ଲୋକେ ବୁଝିପାରିବା ଭଳି ଭାଷାରେ ଖଣ୍ଡେ ବହି ପ୍ରକାଶ ପାଇଁ ଆଗ୍ରହ ପ୍ରକାଶ କଲେ ସେତେବେଳେ ଏତେଶୀଘ୍ର ବହିଟି ବାହାରି ପାରିବ ବୋଲି ଭରସା ନଥିଲା । କିନ୍ତୁ କୃତଜ୍ଞତାର ସହିତ ଜଣାଉଛି ଯେ, ଭାରତ ସରକାରଙ୍କ ମତ୍ସ୍ୟ ଗବେଷଣା କେନ୍ଦ୍ର (କଟକ)ର ମୁଖ୍ୟ ଅଫିସର ଶ୍ରୀ କେ. ଏଚ୍. ଆଲିକୁନ୍ହି ଓ ଓଡ଼ିଶା ମତ୍ସ୍ୟ ବିଭାଗର ଡେପୁଟି ଡାଇରେକ୍ଟର ଶ୍ରୀ ଗଗନବିହାରୀ ମହାନ୍ତି ଏ ବହି ଖଣ୍ଡିକ ଲେଖିବାପାଇଁ ଆଶାତୀତ ଭାବରେ ସାହାଯ୍ୟ କଲେ । କୌଣସି ଗୋଟାଏ ସନ୍ଦେହ ତୁଟାଇବା ପାଇଁ ଯେତେବେଳେ ଯାଇଁ ସେମାନଙ୍କ ପାଖରେ ପହଞ୍ଚିଛି, ସେମାନେ ମୋତେ ନିରାଶ କରିନାହାନ୍ତି । ସେମାନଙ୍କ ଜ୍ଞାନଭଣ୍ଡାରର ଚାବିଟା ସତେ ଯେପରି ମୋ ହାତକୁ ବଢ଼ାଇ ଦେଇ ଅଛନ୍ତି । ତେଣୁ ସେ ଦୁଇଜଣଙ୍କୁ ଓ ଶ୍ରୀ ସାନ୍ତ୍ୱନୁକୁମାର ଦାସଙ୍କୁ ମୋର ଅନ୍ତରର ଧନ୍ୟବାଦ ଓ କୃତଜ୍ଞତା ଜଣାଉଛି । ଏ ବହିଟି ପଢ଼ିଲେ ଯଦି କାହାର କିଛି ଲାଭ ହେବ, ସେଥିପାଇଁ ପ୍ରଶଂସା ପାଇବେ ସେଲୋକମାନେ ।

ଯେତିକି ବିଷୟ ଏଥିରେ ଦିଆଯାଇଛି ତାଠୁଁ ଢେର ବେଶି ଦେଇ ପାରିଥିଲେ ନିଶ୍ଚୟ ଭଲ ହୋଇଥାନ୍ତା, କିନ୍ତୁ ମନ ଭିତରେ ବହିଟିର ମୂଲ୍ୟ ବଢ଼ିଯିବାର ଭୟଟା ସବୁବେଳେ ରହିଲା ।

ବିନୋଦ କାନୁନ୍‌ଗୋ

# ସୂଚୀ

# ମାଛ ଚାଷ

## ମାଛ ଓ ମନୁଷ୍ୟ

ମନୁଷ୍ୟ ପ୍ରଥମେ ସୃଷ୍ଟି ହେଲାବେଳୁ ତାର ମାଛ ସହିତ ଘନିଷ୍ଠ ସମ୍ପର୍କ ରହି ଆସିଛି ବୋଲି କହିଲେ କିଛି ଭୁଲ ହେବ ନାହିଁ । ଆଜିର ମଣିଷ ଚାଉଳ ଗହମ ଖାଉଛି ସିନା, କିନ୍ତୁ ଯେତେବେଳେ ସେ ଚାଷ କେମିତି କରିବ ଜାଣି ନଥିଲା ସେତେବେଳେ ସେ ଭୂଇଁରେ ଓ ପାଣିରେ ଶୀକାର କରି ତାର ଖାଦ୍ୟ ଯୋଗାଡ଼ କରି ନେଉଥିଲା । କିଛି କିଛି ଫଳମୂଳ ଖାଉଥିଲେ ମଧ୍ୟ ବେଶି ନିର୍ଭର କରୁଥିଲା ମାଂସ ଉପରେ । ଭୂଇଁ ଜୀବର ଓ ପାଣି ମାଛର ମାଂସହିଁ ତାର ପ୍ରଧାନ ଖାଦ୍ୟ ଥିଲା । ଆଜି କେହି କେହି ଯୁକ୍ତି କରନ୍ତି ଯେ ମନୁଷ୍ୟ ଆମିଷ ଖାଦ୍ୟ ଖାଇବା ଉଚିତ ନୁହେଁ, କିନ୍ତୁ ଶରୀର ବିଦ୍ୟାରେ ଯେଉଁମାନେ ପଣ୍ଡିତ ସେମାନେ କହୁଛନ୍ତି— ମନୁଷ୍ୟ ପେଟର ଅନ୍ତର ଗଠନ ଦେଖିଲେ ଜଣାପଡ଼ିବ ଯେ ଉଭୟ ପ୍ରକାରର ଖାଦ୍ୟ ପାଇଁ ତା' ହଜମ ଯନ୍ତ୍ରକୁ ତିଆରି କରାଯାଇଛି । ଯେଉଁ ଜୀବ କେବଳ ମାଂସ ଖାଇ ବଞ୍ଚେ ତାର ଗଣ୍ଡିଟା ଯେତେ ଲମ୍ବ ତା'ର ପାଞ୍ଚଗୁଣ ହେଉଛି ତା'ର ପେଟ

ଉଷ୍ଟରର ଅନ୍ତ । କିନ୍ତୁ କେବଳ ନିରାମିଷୀ ଖାଦ୍ୟ ଖାଉଥିବା ଜୀବର ଗଣ୍ଠିଟା ଯେତେ ଲମ୍ବ, ଅନ୍ତ ହେଉଛି ତା'ର ଷୋଳଗୁଣ । ମନୁଷ୍ୟ ଅନ୍ତ ତା' ଗଣ୍ଠିର ଆଠଗୁଣ ଲମ୍ବା; ତାକୁ ଉଭୟ ପ୍ରକାର ଖାଦ୍ୟ ହଜମ ଉପଯୋଗୀ କରାଯାଇଛି ବୋଲି ଏଥିରୁ ପ୍ରମାଣ ମିଳୁଛି । ମନୁଷ୍ୟ ଦେହକୁ ଯଦି କେବଳ ନିରାମିଷୀ ଖାଦ୍ୟ ପାଇଁ ତିଆରି କରାଯାଇଥାନ୍ତା ତେବେ ପ୍ରଥମରୁ ତ ମଣିଷ ମୋଟେ ବଞ୍ଚି ପାରି ନଥାନ୍ତା । ଆଜି ମଧ୍ୟ ପୃଥିବୀରେ କେତେକ ଲୋକ ଅଛନ୍ତି ଯେଉଁମାନେ କେବଳ ମାଛ ଓ ମାଂସହିଁ ଖାଆନ୍ତି ।

## ଖାଦ୍ୟ ଦୁଇ ପ୍ରକାରର—

ମନୁଷ୍ୟ ଦେହଟା ଗୋଟାଏ ଜୀଅନ୍ତା କଳ । କଳକୁ ଚଳାଇବା ପାଇଁ ଯିନା ପେଟ୍ରୋଲ ଦରକାର, ଘୋରି ହୋଇଗଲେ ବା ଭାଙ୍ଗିଗଲେ ମରାମତି କରିବା ପାଇଁ ଲୁହା, କାଠ, ରବର ବା ସେହିଭଳି କିଛି ପଦାର୍ଥ ଲୋଡ଼ା । "ଜୀଅନ୍ତା ଇଞ୍ଜିନ୍" ଦେହକୁ ଚଳାଇବା ପାଇଁ ଚର୍ବି ଜାତୀୟ ଖାଦ୍ୟ ଦରକାର, କିନ୍ତୁ ମରାମତି କରିବା ପାଇଁ ବା କୌଣସି ଅଂଶ କଟି ବା ଭାଙ୍ଗି ଗଲେ ଯୋଡ଼ିବା ପାଇଁ ପ୍ରୋଟିନ୍ ଜାତୀୟ ଖାଦ୍ୟ ଦରକାର । ଆମ ମାଂସ, ହାଡ଼, ଚମ—ସବୁ ଗଢ଼ା ହୋଇଛି ପ୍ରୋଟିନ୍‌ରେ । କଳଟା ଯିନା ମଝିରେ ମଝିରେ ମରାମତ ହୁଏ—"ଜୀଅନ୍ତା କଳ" ମଣିଷ ଦେହର କ୍ଷୟ ପ୍ରତି ମୁହୂର୍ତ୍ତରେ ଘଟୁଥିବାରୁ ପ୍ରତି ମୁହୂର୍ତ୍ତରେହିଁ ତାର ମରାମତି କାମ ଚାଲିଥାଏ । ଆମେ କିଛି ନକରି ଚୁପ ହୋଇ ଶୋଇ ରହିଲେ ମଧ୍ୟ ଆମ ଫୁସ୍‌ଫୁସ୍, ହୃତ୍‌ପିଣ୍ଡ ଇତ୍ୟାଦି ବରାବର କିଛି କିଛି କାମ କରୁଥିବାରୁ ଦେହର କ୍ଷୟ ଘଟୁଛି ଓ ତାକୁ ମରାମତ କରିବା ଦରକାର ପଡୁଛି ।

## ପ୍ରୋଟିନ୍ ମଧ୍ୟ ଦୁଇ ପ୍ରକାର—

ଏଇ ପ୍ରୋଟିନ୍ ମଧ୍ୟ ଦୁଇ ଜାତିର—ଗୋଟିଏ ସଇସା, ଗୋଟିଏ ମାଇସା । ବରି, ମୁଗ, ବୁଟ, ମଟର ଚଣା ପ୍ରଭୃତି ଡାଲି ଜାତିର ଖାଦ୍ୟ ଓ ଗୁଡ଼ଜଲ ଗଛମାନଙ୍କରେ ମଧ୍ୟ କିଛି କିଛି ପ୍ରୋଟିନ୍ ଅଛି । ତାକୁ କହନ୍ତି "ଉଦ୍ଭିଦ-ପ୍ରୋଟିନ"-ମାଛ, ମାଂସ, ଅଣ୍ଡା ଓ ଦୁଧରୁ ଯେଉଁ ପ୍ରୋଟିନ୍ ମିଳେ ତାକୁ "ଜୀବ—ପ୍ରୋଟିନ" ବୋଲି କୁହାଯାଏ । ମଣିଷ ଦେହକୁ ଏଭଳି ଭାବରେ ତିଆରି କରାଯାଇଛି ଯେ କେବଳ ଉଦ୍ଭିଦ—ପ୍ରୋଟିନ୍ ଖାଇଲେ ତା ଦେହ ସୁସ୍ଥ ରହିବ ନାହିଁ—"ଜୀବ-ପ୍ରୋଟିନ୍" ଖାଇବାକୁ ହିଁ ହେବ । ଯିଏ ନିରାମିଷୀ ସେ ଦୁଧରୁ ଓ ଯେ ଆମିଷ ଆହାରୀ ସେ ମାଛ, ମାଂସ ବା ଅଣ୍ଡାରୁ "ଜୀବ-ପ୍ରୋଟିନ୍" ପାଇବ । ଏ ସମ୍ବନ୍ଧରେ ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ କଥା ମନେ ରଖିଲେ ଭଲ ହେବ । ପ୍ରୋଟିନ୍ ଯେ ଆମ ଦେହକୁ ମରାମତି କରେ ତାହା ନୁହେଁ, ଦେହକୁ ରୋଗ ଆକ୍ରମଣରୁ ରକ୍ଷା କରିବା ଭଳି ସମର୍ଥ କରାଏ । "ଜୀବ-ପ୍ରୋଟିନ" ନଖାଇଲେ ସହଜରେ ରୋଗରେ ପଡ଼ିଯିବାର ଆଶଙ୍କା ରହିଥାଏ ।

ଆମ ଓଡ଼ିଶାର ଆର୍ଥିକ ଅବସ୍ଥା ଯାହା ସେଥିରେ ଯଥେଷ୍ଟ ଦୁଧ ଖାଇବାର ଆର୍ଥିକ ଶକ୍ତି ଲୋକଙ୍କର ନାହିଁ, ଥିଲେ ମଧ୍ୟ ସମସ୍ତଙ୍କ ପାଇଁ ଆବଶ୍ୟକୀୟ ପରିମାଣ ଦୁଧ କେବେହେଲେ ଯୋଗାଡ଼ କରି ହେବ ନାହିଁ । ଦେଶରେ ଯେତେ ଛେଳି ମେଣ୍ଢା ଅଛନ୍ତି ସେମାନଙ୍କଠୁଁ ଆବଶ୍ୟକ ମୁତାବକ ମାଂସ ମଧ୍ୟ ମିଳିବ ନାହିଁ । ତେଣୁ ଖୁବ ଅଳ୍ପ ପରିଶ୍ରମରେ ଓ ଅପେକ୍ଷାକୃତ ଅଳ୍ପ ମୂଲ୍ୟରେ ମିଳୁଥିବା ବା ଚେଷ୍ଟା କଲେ ମିଳି ପାରିବା ମାଛହିଁ

ଓଡ଼ିଶାର ଲୋକଙ୍କୁ ସୁସ୍ଥ ଓ ସବଳ ରଖିବାର ପ୍ରଧାନ ସାମଗ୍ରୀ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ । ଓଡ଼ିଶାର ଲୋକେ ପ୍ରତିଦିନ ଭାତ ସାଙ୍ଗରେ ଡାଲି ଟିକିଏ ମଧ୍ୟ ଖାଇ ପାରୁ ନାହାନ୍ତି । ଯେଉଁଠି ଭାତହିଁ ପ୍ରଧାନ ଖାଦ୍ୟ ସେଠି ମାଛର ଗୁରୁତ୍ୱ ଖୁବ ବେଶି ।

## ମାଛ-ସ୍ୱାଦ-ସ୍ୱାସ୍ଥ୍ୟ

ଯେଉଁ ଖାଦ୍ୟ ଦେହ ପାଇଁ ବେଶି ଦରକାର, ସେହି ଖାଦ୍ୟ ଖାଇବା ପାଇଁ ଆମର ସାଧାରଣତଃ ଆଶା ଜାଗେ ଓ ପାଟିକୁ ସ୍ୱାଦ ମଧ୍ୟ ଲାଗେ । ଦୁଧ, ଦହି, ମାଛ, ମାଂସ, ଅଣ୍ଡା ଖାଇବାପାଇଁ ସବୁ ବୟସ୍କର ଲୋକେ ସୁଖ ପାଆନ୍ତି । ପ୍ରଧାନ ଖାଦ୍ୟ ଭାତ ବା ରୁଟିରେ ଲଗାଇ ଖାଇବା ପାଇଁ ଯଦି କୌଣସି "ଜୀବ-ପ୍ରୋଟିନ" ଖାଦ୍ୟ ମିଳିଗଲା ତେବେ ଆମେ ସନ୍ତୋଷରେ ଖାଉ । ସନ୍ତୋଷରେ ଖାଇଲେ ଖାଦ୍ୟଭଲ ହଜମ ହୁଏ । ଭଲ ହଜମ ହେଲେ ସ୍ୱାସ୍ଥ୍ୟ ଭଲ ରହେ । ଦୁଧ ଯଥେଷ୍ଟ ନ ମିଳୁଥିବା ସ୍ଥଳେ ଓ ମାଂସ ଅପେକ୍ଷାକୃତ ଅଧିକ ଗୁରୁପାକ ହୋଇଥିବାରୁ ଆମ ପାଇଁ, ବିଶେଷତଃ ଆମ ପିଲାଙ୍କ ପାଇଁ ମାଛ ଯେ କେତେ ଦରକାରୀ ସେକଥା ବେଶି ବୁଝାଇବା ବୋଧହୁଏ ଆବଶ୍ୟକ ନାହିଁ ।

---

# ମାଛ ଚାଷ

ପୃଥିବୀର ଲୋକ ସଂଖ୍ୟା ହୁ-ହୁ ବଢୁଛି । ଆମ ଓଡ଼ିଶା ସେ ନିୟମରୁ ବାଦ ପାଇନାହିଁ । ୫ବର୍ଷ ତଳେ ଓଡ଼ିଶାର ଲୋକ ସଂଖ୍ୟା ଥିଲା ମାତ୍ର ଏକ କୋଟି—ଆଜି ପ୍ରାୟ ଦେଢ଼କୋଟି ହୋଇଗଲାଣି । ଜମିତ ଆଉ ବଢୁନାହିଁ, ତେଣୁ ଲୋକଙ୍କୁ ଖାଦ୍ୟ ଯୋଗାଇବା ହୋଇଛି ଗୋଟିଏ ବଡ଼ ସମସ୍ୟା । ସେହି ସମସ୍ୟାର ସମାଧାନ ବାଟରେ ମାଛଚାଷ ଅନେକ ପରିମାଣରେ ସାହାଯ୍ୟ କରି ପାରିବ ବୋଲି ଆଜି ସମସ୍ତଙ୍କର ଦୃଷ୍ଟି ମାଛଚାଷ ଉପରେ ପଡ଼ିଛି ।

## ଆମେ—ମାଛଙ୍କ ସଂଖ୍ୟା—ମାଛଚାଷ

ମନୁଷ୍ୟଜାତି ସୁସ୍ଥ ଭାବରେ ବଞ୍ଚିବା ପାଇଁ ଦୁଧ, ମାଛ, ମାଂସ ଦରକାର ଓ ଦୁଧ ବା ମାଂସ କେବେହେଲେ ଯଥେଷ୍ଟ ପରିମାଣରେ ମିଳିବ ନାହିଁ—ଏହି କାରଣରୁ ବୋଧହୁଏ ଦୁନିଆରେ ଏତେ ଅସମ୍ଭବ ସଂଖ୍ୟାରେ ମାଛ ସୃଷ୍ଟି କରାଯାଇଛି । ଓଡ଼ିଶାରେ ଲୋକ ସଂଖ୍ୟା ୧୪୬ ଲକ୍ଷ ହେଲାବେଳକୁ ଛେଳି ମେଣ୍ଢାଙ୍କ ମିଳିତ ସଂଖ୍ୟା କେବଳ ୨୨ ଲକ୍ଷ, ଅର୍ଥାତ୍ ପ୍ରାୟ ଛ ସାତ ଜଣ ଲୋକଙ୍କ ପିଛା କେବଳ ଗୋଟିଏ ଛେଳି ବା ମେଣ୍ଢା ପଡୁଛି । କିନ୍ତୁ ମାଛଙ୍କ ସଂଖ୍ୟା ସହିତ ମନୁଷ୍ୟଙ୍କୁ ତୁଳନା କଲେ ବିସ୍ମିତ ହେବାକୁ ହୁଏ । ପୃଥିବୀର ତିନିଭାଗ ହେଲା ସମୁଦ୍ର—ତା' ସାଙ୍ଗକୁ ପୁଣି ହଜାର ହଜାର ମାଇଲ ନଈ ନାଳ ଓ ଘାଟ ରହିଛି । ସମୁଦ୍ର ଭିତରେ କେତେ ଯେ ମାଛ ଅଛନ୍ତି ତାହା କଳନା କରି ହେବ ନାହିଁ । କେବଳ ଗୋଟାଏ ଧାରଣା କରିବା ପାଇଁ ଦୁଇଟି ମାତ୍ର କଥା କୁହାଯାଉଛି । ଆଟଲାଣ୍ଟିକ ମହା ସାଗରରେ ପ୍ରଚୁର

ହେରିଙ୍ଗ, କଡ୍ ଓ ହାଡ୍‌ଡକ୍ ମାଛ ଅଛନ୍ତି । ସେମାନେ ସମୁଦ୍ରରେ ପେଲା ପେଲା ହୋଇ ଚରନ୍ତି ଓ ହିସାବ କରି ଦେଖା ଯାଇଛି ଯେ ଗୋଟିଏ ଗୋଟିଏ ହେରିଙ୍ଗ ପେଲାରେ ୩,୦୦୦, ୦୦୦, ୦୦୦ (ତିନିଶହ କୋଟି) ପର୍ଯ୍ୟନ୍ତ ମାଛ ଥାନ୍ତି । ସମଗ୍ର ଆଟଲାଣ୍ଟିକ ମହା ସାଗରରେ ଏହିପରି କେତେ ପେଲା ଯେ ବୁଲୁଥିବେ ତା' କିଏ କହିବ ? ସେହି ମହା ସାଗରରୁ ପ୍ରତିବର୍ଷ ପ୍ରାୟ ପଚିଶି ପଚାଶ କୋଟି କଡ୍ ମାଛ ଧରା ହେଉଛନ୍ତି । ସେଥିରେ ଯେତେ କଡ୍ ଅଛନ୍ତି ଏହି ସଂଖ୍ୟା ତାର ଗୋଟାଏ ଅତି ସାମାନ୍ୟ ଅଂଶ । ଆମ ସମୁଦ୍ର କୂଳରେ ଥରେ ଥରେ କେତେ ସଂଖ୍ୟାରେ ଇଲିସି ବା ଅନ୍ୟ ମାଛ ମରନ୍ତି ସେ ଦୃଶ୍ୟ ଅନେକେ ଦେଖିଥିବେ । ମନୁଷ୍ୟ ଯେତେ ଚେଷ୍ଟା କଲେ ମଧ ଏହି ଅନନ୍ତ ମାଛ ଭଣ୍ଡାର ଶେଷ କରିଦେଇ ପାରିବ ନାହିଁ ବୋଲି ମନେ ହେଉଛି । ଏକଥା ଅବଶ୍ୟ ସତ ଯେ ଆଧୁନିକ ମାଛଧରା ଜାହାଜ ସାହାଯ୍ୟରେ 'ଯନ୍ତ୍ର ଚାଳିତ ଜାଲରେ ଏତେ ମାଛ ମରାଯାଉଛି ଯେ ଉପକୂଳମାନଙ୍କରୁ ମାଛ ସଂଖ୍ୟା କମି ଯାଉଛି, କିନ୍ତୁ ମନୁଷ୍ୟ କ୍ରମେ କ୍ରମେ ସମୁଦ୍ରରେ ଅଧିକରୁ ଅଧିକ ଦୂର ଯିବ । ଆହୁରି ଉନ୍ନତ ପ୍ରଣାଳୀର ମାଛ ମରା ଜାହାଜ ଓ ଯନ୍ତ୍ର ବାହାର କରିବ ଓ ପ୍ରକୃତି ଯେଉଁ ଅସରନ୍ତି ମାଛ ଭଣ୍ଡାର ସଜାଇ ରଖିଛି ସେଥିରୁ ଖାଦ୍ୟ ସଂଗ୍ରହ କରିବ ।

ତା' ସତ୍ତ୍ୱେ ମଣିଷ ଗଲା ବାଇଶ ଶହ ତେଇଶ ଶହ ବର୍ଷ ହେଲା ମାଛ ଚାଷ କରିବା ଆରମ୍ଭ କରିଛି । କାରଣ ସମୁଦ୍ରରୁ ବେଶୀ ଦୂରରୁ ମାଛ ମାରିବା ସହଜ ହେଉନାହିଁ ଓ ମାଛ ଏ ଭଳି ଗୋଟିଏ ପଦାର୍ଥ ଯେ ଧରା ହେବାର ଅଳ୍ପ ସମୟ ପରେ ପଚି ଯିବାକୁ ଆରମ୍ଭ କରେ ଓ ବେଶି ସମୟ ଭଲ ଅବସ୍ଥାରେ ରହେ

ନାହିଁ । ତେଣୁ ସମୁଦ୍ରଠାରୁ ଶହ ଶହ ମାଇଲ ଦୂରରେ ଥିବା ସ୍ଥାନମାନଙ୍କରେ ଟଟକା ଓ ଭଲ ମାଛର ଅଭାବ ପଡ଼ିଯାଏ ।

## ଲୁଣି ଓ ମଧୁର ମାଛ

ଲୁଣି ମାଛ ସିନା ଏତେ ପରିମାଣରେ ଉତ୍ପନ୍ନ—ମଧୁର ମାଛ ବା ମଧୁର ପାଣିରେ ରହିବା ମାଛ ତ ଏତେ ନାହାନ୍ତି । ଉଭୟ ପ୍ରକାର ମାଛର ସ୍ୱାଦ ଭିନ୍ନ ଭିନ୍ନ । ଗୁଣ ହୁଏତ କଷ୍ଟସୂ ଅତି ସାମାନ୍ୟ ହେଲେ ମଧ ଭିନ୍ନ ହୋଇଥିବ । ତେଣୁ ମଣିଷ ବହୁକାଳରୁ ଦେଶ ଭିତରେ ପୋଖରୀ ଖୋଳି ମାଛ ଚାଷ କରି ଆସିଛି । ଯେଉଁମାନଙ୍କୁ ଲୁଣିମାଛ ଭଲ ଲାଗେ ସେମାନେ ମଧୁର ମାଛକୁ ସେତେ ଆଦରନ୍ତି ନାହିଁ ଓ ମଧୁର ମାଛର ସ୍ୱାଦ ପାଇ-ଥିବା ଲୋକେ ମଧ ଲୁଣି ମାଛର ଖୋଲଖଣା ତାରିଫ କରନ୍ତି ନାହିଁ ।

ସମୁଦ୍ର, ନଦୀମୁହାଣ ଅର୍ଥାତ୍ ସମୁଦ୍ର ଓ ନଦୀର ମିଳନସ୍ଥଳ ଓ ଦେଶ ଭିତରର ଜଳଭଣ୍ଡାରରୁହିଁ ମଣିଷ ମାଛ ସଂଗ୍ରହ କରେ । ସମୁଦ୍ର ଓ ନଦୀ ମୁହାଣରେ ମାଛ ଚାଷର ପ୍ରଶ୍ନ ଉଠୁନାହିଁ ବା ଆବଶ୍ୟକ ନାହିଁ । ତେଣୁ ଆମେ ଦେଶ ଭିତରେ ମଧୁର ଜଳରେ ଅଧିକରୁ ଅଧିକ ମାଛ ପାଳି କି ଭଳି ଖାଦ୍ୟ ସମସ୍ୟା ତୁଟାଇବା ଓ ଜାତିଟାର ସ୍ୱାସ୍ଥ୍ୟ ଗଠନ କରି ପାରିବା ସେଇକଥାହିଁ ଦେଖିବାର କଥା ।

## ଚାଷ ଓ ମାଛ ଚାଷ

ଓଡ଼ିଶାରେ ହଜାର ହଜାର ଗଡ଼ିଆ ପୋଖରୀ ଥିଲେ ମଧ ଗୋଟାଏ ଯୋଜନା କରି ଯତ୍ନ ନେଇ ଆମେ ମାଛଚାଷ ନ କରୁଥିବାରୁ ବିଶେଷ ଲାଭବାନ ହେଉନାହୁଁ । ବର୍ଷାଦିନେ କେତୁ ଯାଆଳି ଧରି ନେଇ ପୋଖରୀରେ ଛାଡ଼ି ଦେବାରେହିଁ ଆମ

# ମାଛ ଚାଷ

କର୍ତ୍ତବ୍ୟ ଶେଷ କରି ଦେଇ ଥାଉ । ସେ ଯାଆଁଳଙ୍କ ଭିତରୁ ଭାଗ୍ୟ ଯୋଗରେ ଯେତେକ ଉଠିଲେ ସେତକ ଧରିନେଇ ଆମେ ସନ୍ତୋଷ ଲାଭ କରୁ । ବଣ ଜଙ୍ଗଲ ପଡ଼ିଆରେ ବିହନ ଗଛାଏ ଗୁଣ୍ଡି ଦେଇ ଯେତିକି ଫଳିଲା ସେତିକି ଧାନ ଘରକୁ ନେବାଟାକୁ ଯେପରି ଧାନ ଚାଷ ବୋଲି କୁହାଯାଏ ନାହିଁ, ପୋଖରୀ ଭିତରେ ଦ'ଟା ଯାଆଁଳ ଗୁଣ୍ଡ ଦେଇ ବଡ଼ ହେଲେ ମାଛତକ ଧରି ନେବାଟାକୁ ସେହିଭଳି ମାଛ ଚାଷ ବୋଲି କୁହା-ଯାଏନାହିଁ । ଆମେ ଯେଉଁ ମାଛ ପାଉଛୁ ତାହା କପାଳ-ବାଜ ! ଅନେକ ଯତ୍ନ ନେଇ ପୋଖରୀରେ ଅବଶ୍ୟ ମାଛ ଛାଡ଼ନ୍ତି, କିନ୍ତୁ ସେମାନେ ଏହି ସାଧାରଣ ନିୟମର ବ୍ୟତିକ୍ରମ ବୋଲି କହିଲେ କିଛି ଭୁଲ ହେବ ନାହିଁ !

ଜଣେ ଚାଷୀ ଆଳୁ କରି ଲାଭ ପାଇବାକୁ ଇଚ୍ଛା କରୁଥିଲେ କରେ କଣ ? ସେ ପ୍ରଥମେ କ୍ଷେତ୍ର ବାଛି ନିଏ । ଯେଉଁ ମାଟିରେ ଆଳୁ ଭଲ ଫଳିବ ସେହିଭଳି ମାଟି ବାଛିବା ତା'ର ହେଲା ପ୍ରଥମ କାମ । ଆଳୁ ଲଗାଇବାର ଋତୁ ଅଛି । ଠିକ୍ ସମୟରେ ନ ଲଗାଇଲେ ଭଲ ଫଳିବ ନାହିଁ—ଶୀତ ଗୁଡ଼ିଯିବ ଇତ୍ୟାଦି କଥା ତା ମୁଣ୍ଡରେ ଖେଳେ । ଠିକ୍ ବେଳରେ ଅତି ଯତ୍ନରେ ଆଳୁ-କିଆରୀ ଚାଷ କରିବାଟାକୁ ସେ ବଡ଼କଥା ବୋଲି ବିଚାରେ, କାରଣ ଜମିକୁ ଭଲ କରି ଚାଷ କରି ମାଟିକୁ ଖରା ଖୁଆଇ ଘାସ ନ ବାଛିଥିଲେ ପଛରେ ଅସୁବିଧା ହେବ । ଜମି ଚାଷ କରିବା ସଙ୍ଗେ ସଙ୍ଗେ ବିହନ ବା ମଞ୍ଜି ଉପରେ ଆଖି ବୁଲାଇ ଥାଏ । ନାଲି, ଫୁଲଟାକଣ, କାଟେଣୀ ବା ଖଡ଼କା—କେଉଁ ମଞ୍ଜି ଲଗାଇଲେ ବେଶୀ ଫଳିବ, ଯା କିଆରୀରେ କେଉଁ ମଞ୍ଜି ଲଗାଇଲେ ଭଲ ହେବ ଇତ୍ୟାଦି କଥା ସେ ବିଚାରକୁ

ଆଣେ । ମଞ୍ଜି ଲଗାଇଲାବେଳେ ଯେପରି ଅତି ବହଳ ବା ପତଳା ନ ହେବ ତା ମଧ୍ୟ କଆଁଶ ଠିକ୍ କଲାବେଳେ ତ ଖତ ପିଢ଼ଆ ଯାହା ଦେବାର ଦେଇ ମାଟିରେ ଭଲ କରି ମିଶାଇ ଦେଇଥାଏ, ଗଛ ଟିକଏ ଟିକଏ ବଢ଼ିଗଲେ, ପୁଣି ଥରେ ସର ପିଢ଼ଆ ଦିଏ । କେଉଁ ମାଟିରେ କି ଜାତିର ମଞ୍ଜି ପାଇଁ କେତେ ଓ କି ପ୍ରକାରର ସାର ପିଢ଼ଆ ଦିଆଯିବ ସେ କଥା ସ୍ଥିର ନ କରି, କିଛି ନ ବୁଝି ତା ଆଳୁକଆଁଶରେ ସେ ସାର ଦେଇ ଦିଏ ନାହିଁ । ସାର ପିଢ଼ଆ ଦେବା ସଙ୍ଗେ ସଙ୍ଗେ କଆଁଶର ଯତ୍ନ ନେଇ ମଝିରେ ମଝିରେ ପାଣିଦିଏ । ଗଛରେ ଯଦି ପୋକ ଲାଗିଲା ତା ହେଲେ ସର୍ବନାଶ । ପୋକ ଯେ ଭଳି ଗୁଣ୍ଡିପିବେ ତା' ଉପାୟ ସେ ନିଶ୍ଚୟ କରେ । ପୋକଙ୍କ ବ୍ୟତୀତ ଆଳୁଗଛକୁ ଯେପରି ତା ଶତ୍ରୁ ଗୋରୁ, ଛେଳି ଖାଇ ନ ଯିବେ ବା ଝିଙ୍କ ଖୋଳି ନ ପକାଇବେ ସେ କଥା ମଧ୍ୟ ଦେଖୁଥାଏ ।

ଏତେ କଥା କରି ସାରିଲା ପରେ ଠିକ୍ ସମୟ ଦେଖି ଫସଲ ଅମଳ କରେ । ବଜାରରେ ଯେତେବେଳେ ବେଶୀ ଚାହିଦା, ବେଶୀ ପଇସା ମିଳିବ ସେତିକିବେଳେ କେବଳ ତା' ଆଳୁ ବଜାରକୁ ବାହାରି ଆସିବ ସେଇଟା ନ ଦେଖିଲେ ଚାଷରେ ବିଶେଷ କିଛି ଲାଭ ନାହିଁ । କଆଁଶ ମୂଣ୍ଡରୁ ବେପାରୀଙ୍କୁ ମପାଇ ଦେବ କି ଅପେକ୍ଷା କରି ବଜାରକୁ ଛାଡ଼ିବ କି ଭାଉ ଦେଖିବା ପାଇଁ ଟିକଏ ସମୟ ଗଡ଼ାଇ ଦେବ ସେ ବିଷୟ ସେ ନିଶ୍ଚୟ କରେ । ଯଦି ବିକ୍ରି ନ ହେଉଛି, ଭାଉ ନ ପଡ଼ୁଛି ଆଳୁତକ ସେ ସାଇତି ଦିଏ । ସାଇତି ନ ଜାଣିଲେ ପଚିଯିବ ଓ ସମୟରେ ଜମା ବୁଡ଼ିଯିବ ।

ମାଛ ଚାଷ ଯେ କରିବ ତାଙ୍କୁ ମଧ୍ୟ ଠିକ୍ ଏତିକ ଗୁଡ଼ିଏ କଥା ପ୍ରତି ଦୃଷ୍ଟି ଦେବାକୁ ହେବ । ପ୍ରଥମରୁ ଭଲ ପୋଖରୀଟି କରିବ । ଯେତିକି ଲମ୍ବା, ଓସାର ଓ ଗଭୀର ହେବା ଉଚିତ ସେତିକି ନ ହେଲେ ନାନା ଅସୁବିଧା ହେବ । ମାଛ ଛାଡ଼ିଲା ପୂର୍ବରୁ ପୋଖରୀ ତଳଟା ଭଲ ଭାବରେ ଚାଷ କରି ଦରକାର ହେଲେ ସାର ପିଇଆ ଦେବ । ତା'ର ହୁଡ଼ା ଓ ଚାରିପାଖ ଠିକ କରି ନିଆ ଯିବ । କେଉଁ ମାଟିର ପୋଖରୀରେ କେଉଁ ଜାତିର ମାଛ ଭଲ ବଢ଼ିବେ ସେଇଟା ଆଗରୁ ଯେତେ ଦୂର ସମ୍ଭବ ବିଚାରି ଠିକ କରିନେବାକୁ ହେବ । ଗୁଡ଼ାଏ ଯାଆଁଳ ଛାଡ଼ିଦେଲେ ଲାଭ ନାହିଁ । କେହି ବଢ଼ି ପାରିବେ ନାହିଁ; ଗୋଟାଏ ବଡ଼ ପୋଖରୀରେ ଅଳ୍ପ ଯାଆଁଳ ଛାଡ଼ିବାର କୌଣସି ଅର୍ଥ ମଧ୍ୟ ନାହିଁ । ଯାଆଁଳ ଛାଡ଼ିଲା ପରେ ସେମାନେ ଯଥେଷ୍ଟ ଓ ଉପଯୁକ୍ତ ପରିମାଣରେ ଖାଦ୍ୟ ପାଉଛନ୍ତି କି ନାହିଁ ସେତକ ଦେଖିବାକୁ ପଡ଼ିବ । କିଛି ଦିନ ପରେ ମାଛ ଟିକିଏ ବଡ଼ ବଡ଼ ହୋଇଗଲେ ଠିକ ଭାବରେ ବଢ଼ୁଛନ୍ତି କି ନାହିଁ, ନ ବଢ଼ୁଥିଲେ କେଉଁ କାରଣରୁ ବଢ଼ୁ ନାହାନ୍ତି ତାର କାରଣ ଖୋଜି ପ୍ରତିକାର କରିବା ହେଲା ମାଛ ଚାଷର ଗୋଟାଏ ବଡ଼କାମ । ମାଛକୁ ରୋଗ ଧରିବାର ଡର ତ ଅଛି—ଅନ୍ୟ ଶତ୍ରୁ ଓଧ, କୁମ୍ଭୀର, କଇଁଛ, ଶରଳ, ବାଲିଆଙ୍କ ମୁହଁରୁ ତାକୁ ରକ୍ଷା କରିବାକୁ ହେବ ।

ଏସବୁ କାମ ସରିଲା ପରେ ଦେଖିବାକୁ ହେବ କେତେ-ବେଳେ ଓ କେତେ ବଡ଼ ହେଲେ ମାଛ ଧରିବାକୁ ହେବ । ବର୍ଷିକିଆ, ଦି ବର୍ଷିଆ କି ତିନି ବର୍ଷିଆ ମାଛ ଧରି ବିକିଲେ ଲାଭ ହେବ ସେକଥା ଅନେକ ଦିଗରୁ ବିଚାର କରି ସ୍ଥିର କରିବାକୁ ହେବ । ମାଛକୁ ଅନେକ ବର୍ଷ ପର୍ଯ୍ୟନ୍ତ ରଖି ଅଯଥା

କଡ଼ କରି ତା'ର ସ୍ୱାଦ ନଷ୍ଟ କରିବାରେ ଲାଗନ୍ତି। ପୋଖରୀରୁ ଠିକ୍ ସମୟରେ ଧରିନେଇ ନୂଆ ନୂଆ ଯାଆଁଳ ଛାଡ଼ିବାରେ ହିଁ ଲାଭ ଅଛି। ମାଛ ଧରିଲା ପରେ ବିକ୍ରିହେବା ପର୍ଯ୍ୟନ୍ତ କିଭଳି ଯତ୍ନରେ ରଖିବାକୁ ହେବ, ପଚାଯିବ ନାହିଁ ତାହା ମଧ୍ୟ ନ ଦେଖିଲେ କ୍ଷତିର ଆଶଙ୍କା ରହିଛି।

ତେଣୁ ଆଧୁନିକ ଚାଷ ଭଳି ମାଛଚାଷରେ ମଧ୍ୟ କ୍ଷେତ୍ର ବା ପୋଖରୀ ବାଛିବା ଓ ପ୍ରସ୍ତୁତ କରିବା, ଜଳବାୟୁ ପ୍ରତି ନଜର ରଖିବା, ଭଲ ଯାଆଁଳ ବା ବୀହନ ବାଛିବା, ଖାଦ୍ୟ ଯୋଗାଇବା, ଯତ୍ନନେବା, ରୋଗର ଚିକିତ୍ସା କରିବା, ଶତ୍ରୁ ମୁହଁରୁ ରକ୍ଷା କରିବା, ଠିକ୍ ସମୟରେ ଧରିବା; ଲାଭହେଲା ଭଳି ଦରରେ ବିକି କରିବା ଓ ସାଇତିବା—ଏହି ଦଶଟି କଥା ପ୍ରତି ଦୃଷ୍ଟି ଦେବାକୁ ହେବ, ତା'ନହେଲେ ପ୍ରକୃତ ମାଛ ଚାଷହେଲା ବୋଲି କୁହାଯିବ ନାହିଁ ବା ସେ ଭଳି ଚାଷରେ ଲାଭ ନାହିଁ।

## ଚାଷର ଭବିଷ୍ୟତ ଓ ଯୋଜନା

ଆମ ଦେଶରେ ନାନାପ୍ରକାରର ଜଳଭଣ୍ଡାର ରହିଛି। ଗଡ଼ିଆ ପୋଖରୀ, ପ୍ରାକୃତିକ ହ୍ରଦ, ଅଟକାଇ ରଖାଯାଇଥିବା ବିରାଟ ଜଳଭଣ୍ଡାର, ପଚିଆଣୀ ପାଣି, କେନାଲ, ପାଟ, ପାଟରେ ଥିବା ଧାନ କ୍ଷେତ, ଏଭଳିକି ବର୍ଷା ବେଳେ ସ୍ଥାନେ ସ୍ଥାନେ ଜମି ରହୁଥିବା ଅସଂଖ୍ୟ ଖାଲ—ଏଗୁଡ଼ିକୁ ସବୁଠିକି ମାଛ ଚାଷ ଉପଯୋଗୀ କରାଯାଇପାରେ। ଏଭଳି ଏକ ଜଳ ସମ୍ପଦର ସୁଯୋଗ ନେଇ ବୈଜ୍ଞାନିକ ପ୍ରଣାଳୀରେ ଚଷାକରି ଆମେ ଯେତେ ମାଛ ଆମଦାନୀ କରି ପାରନ୍ତେ ତା' କରି ପାରୁନାହିଁ। କେଉଁ ପାଣିରେ କି ଜାତିର ମାଛକୁ କି ଖାଦ୍ୟ ଦେଇ କିଭଳି ପାଳି-

ହେବ ସେ ବିଷୟରେ ସର୍ବଶ୍ରେଷ୍ଠ ଜ୍ଞାନ ଅନେକଙ୍କୁ ଦେଇ ପାରିଲେ ଅନେକ କଥା ହୁଅନ୍ତା । ଏକଥା ଅବଶ୍ୟ ସତ ଯେ ଆମ ଦେଶରେ ସେ ଦିଗରେ ସର୍ବଶ୍ରେଷ୍ଠ ଗବେଷଣା ହୋଇନାହିଁ—ଯାହା ବା ଗବେଷଣା ହୋଇଛି ତା'ର ପ୍ରୟୋଗ କରି କିଭଳି ଫଳ ମିଳୁଛି ସେ ବିଷୟରେ ଆମେ ନିଶ୍ଚିତ ହୋଇନାହୁଁ । ତଥାପି ଯେତିକି ଜ୍ଞାନ ଆମ ବିଶେଷଜ୍ଞମାନେ ନିଜ ଚେଷ୍ଟାରେ ହାସଲ କଲେଣି ସେତିକି ଯଦି ଲୋକଙ୍କ ପାଖରେ ପହଞ୍ଚିପାରନ୍ତା ତେବେ ମହା ଉପକାର ହୁଅନ୍ତା ।

ଲୋକଙ୍କ ଭିତରେ ମାଛ ଚାଷର ଜ୍ଞାନ ପ୍ରସାର କରି ଯଦି ସୁଚିନ୍ତିତ ଯୋଜନା କରି କାମ କରାଯାଏ ତେବେ ଅଳ୍ପଦିନ ମଧ୍ୟରେ ଖୁବ୍ ବେଶି ଲାଭ ହେବା ବିଷୟରେ ଟିକିଏ ହେଲେ ସନ୍ଦେହ ନାହିଁ ।

---

୩

# ମାଛ ବିଷୟରେ ଦୁଇଟି ଜ୍ଞାନ

ମାଛ ସମ୍ବନ୍ଧରେ ଦୁଇଟି ଜ୍ଞାନ ଆମକୁ ଖୁବ୍ ସାହାଯ୍ୟ କରିବ । ସେ ଜ୍ଞାନର ଅଭାବରେ ମାଛ ସମ୍ବନ୍ଧ ଆମର ପରିଚୟ ହୋଇ ପାରିବ ନାହିଁ କି ଆମେ ମାଛଚାଷୀ ହୋଇ ପାରିବା ନାହିଁ । ଗୋଟିଏ ହେଲା ତାର ନିଶ୍ୱାସ ନେବା ପ୍ରଣାଳୀ ଓ ଅନ୍ୟଟି ହେଲା ତା'ର ଖାଇବା ଢଙ୍ଗ ।

ମାଛ ଯଦି ଆମ ଭଳି ନିଶ୍ୱାସ ନେଉଥାନ୍ତା ତେବେ କିଛି କହିବାର ନଥିଲା । ଆମେ ଯେଉଁ ଢଙ୍ଗରେ ନିଶ୍ୱାସ ନେଉ ମାଛର ନିଶ୍ୱାସ ନେବା ଢଙ୍ଗଟା ହେଲା ତା'ର ଠିକ୍ ଓଲଟା ।

ପାଣିରେ ବୁଡ଼ିଗଲେ ଆମେ କିଛି ସମୟ ପରେ 'ଅଣନିଶ୍ୱାସୀ' ହୋଇ ମରିଯାଉ—ଉପରକୁ ନେଇ ଆସିଲେ ମାଛ ଅଣନିଶ୍ୱାସୀ ହୋଇ ମରିଯାଏ । ଫଳ ଏକହେଲେ ମଧ୍ୟ କାରଣଟା ହେଲା ସମ୍ପୂର୍ଣ୍ଣ ବିପରୀତ ।

ନିଆଁକୁ ଜଳାଇ ରଖିବା ପାଇଁ ଯେପରି ଅମ୍ଳଜାନ ଦରକାର ଜୀବନ ନିଆଁକୁ ଜଳାଇ ରଖିବା ପାଇଁ ସେହିପରି ଅମ୍ଳଜାନ ଦରକାର । ନିଆଁକୁ ପବନ ଜଳାଇ ରଖି ପାରିବ ନାହିଁ—ରଖିବ ପବନ ଭିତରେ ଥିବା 'ଅମ୍ଳଜାନ' । ଆମ ଚାରିପଟେ ଥିବା ଅସରନ୍ତି ପବନ ତିନୋଟି ଉପାଦାନ ନେଇ ତିଆରି ହୋଇଛି—ଅମ୍ଳଜାନ, ଅଙ୍ଗାରକାମ୍ଳ ଓ ଯବକ୍ଷାରଜାନ (ଅକ୍ସିଜେନ, କାର୍ବନ ଡାଇଅକ୍ସାଇଡ଼ ଓ ନାଇଟ୍ରୋଜେନ) । ଅମ୍ଳଜାନ (ଅକ୍ସିଜେନ)ର କାମ ହେଲା ନିଆଁକୁ ଜଳାଇବ, ଅଙ୍ଗାରକାମ୍ଳ (କାର୍ବନଡାଇ ଅକ୍ସାଇଡ଼)ର କାମ ନିଆଁକୁ ଲିଭାଇବ ଓ ନାଇଟ୍ରୋଜେନର କିଛି ସ୍ୱତନ୍ତ୍ର କାମ ନଥିଲେ (ନିଶ୍ୱାସନେବା କାମରେ) ମଧ୍ୟ ଏହି ଉଭୟ ବିପରୀତ ଗୁଣକାରକ ବାଷ୍ପକୁ ତରଳାଇ ରଖିବା ଦାୟିତ୍ୱ ନେଇଥାଏ ।

ଜୀବନ ନିଆଁକୁ ବରାବର ଜଳାଇ ରଖିବା ପାଇଁ ଆମେ ନିଶ୍ୱାସ ନେଉ । ଦେହ ଭିତରେ ପଶିଲାପରେ ପବନରେ ଥିବା ଅମ୍ଳଜାନ ତକ ଆମ ରକ୍ତରେ ମିଶିଯାଏ ଓ ଦେହଟା କାମକରେ । କାମ କଲେ ଦେହଭିତରେ ଜୀବନ ଦୀପ ଜଳିଲେ ଗୁଡ଼ାଏ ଅଙ୍ଗାରକାମ୍ଳ ବାଷ୍ପର ସୃଷ୍ଟିହୁଏ । ଏହି ବାଷ୍ପ ସଞ୍ଚିତ ଦେହରେ ରହିଲେ ବିଷଭଳି କାମ କରନ୍ତା । ଆମେ ଯେତେବେଳେ ନିଶ୍ୱାସ ଛାଡ଼ୁ ସେହି ପବନରେ ଦେହ ଭିତରୁ ଅଙ୍ଗାରକାମ୍ଳ ବାଷ୍ପ ବାହାରି ଆସେ । ନିଶ୍ୱାସ ନେବାର ଉଦ୍ଦେଶ୍ୟ ହେଉଛି ଜୀବନ

ଅମ୍ଳଜାନ ମିଶାଇବା ଓ ରକ୍ତରୁ ଅଙ୍ଗାରକାମ୍ଳ ବାହାରକରି ଫିଙ୍ଗାଇବା ।

ଏହି ପ୍ରକାରର ନିଶ୍ୱାସ ନେବା ପ୍ରାଣୀ ମାନେହିଁ କରନ୍ତି । ନିଶ୍ୱାସ ନେବା ଛାଡ଼ିବା କାମକୁ 'ରକ୍ତ ଶୋଧନ କ୍ରିୟା' ବୋଲି ମଧ୍ୟ କୁହାଯାଏ । ସେଇ କାମ ପାଇଁ ପ୍ରତି ପ୍ରାଣୀ ଦେହ ଭିତରେ ଗୋଟାଏ କାରଖାନା ଅଛି । ତାକୁ 'ରକ୍ତଶୋଧନ କାରଖାନା' ବା 'ନିଶ୍ୱାସ ଯନ୍ତ୍ର' ବୋଲି କହନ୍ତି ।

ଆମେ ଅମ୍ଳଯାନ ନେଉ ପବନରୁ କିନ୍ତୁ ମାଛ ବାହାର ପବନରୁ ଅମ୍ଳଜାନ ନେଇ ପାରିବ ନାହିଁ, ପାଣି ଦେହରେ ଅମ୍ଳଜାନ ବାଷ୍ପ ଗୋଳା ହୋଇ ରହିଛି । ମାଛ ସେହି ପାଣିରୁ ଏହି ବାଷ୍ପକୁ ନେଇ ଫୁଲରୁ ଓ ଦେହ ଭିତରୁ ଅଙ୍ଗାରକାମ୍ଳ ବାଷ୍ପକୁ ପାଣି ଦେହରେ ଛାଡ଼ି ଦେଉଛି ।

ଗୋଟିଏ ଲୁହା କାଚ୍ଚ ତିଆରି ଘରେ ଜଣେ ମଣିଷକୁ ଛାଡ଼ି ଝରକା ସମ୍ପୂର୍ଣ୍ଣ ରୂପେ ବନ୍ଦ କରିଦେଲେ କିଛି ସମୟ ପରେ ସେ ଅନିଃଶ୍ୱାସୀ ହୋଇ ମରିଯିବ । ସେ ଘରେ ଯଥେଷ୍ଟ ପବନ ଥିଲେ ମଧ୍ୟ ପବନରେ ଥିବା ଅମ୍ଳଜାନତକ ମଣିଷ ଖର୍ଚ୍ଚ କରିଦେବ । ଅମ୍ଳଜାନ ଅଭାବରୁ ତାର ଜୀବନ ନଥାଁ ଲଭିଯିବ । ସେହିଭଳି ଗୋଟିଏ ବନ୍ଦକରି ବା ଲୁହାହେଉ ପାଣି ଭର୍ତ୍ତି କରି ଝରକା ବନ୍ଦ କରି ମାଛ ଛାଡ଼ିଦେଲେ ଅଳ୍ପ ସମୟ ପରେ ପାଣି ଭିତରେ ମିଶିକରି ଥିବା ଅମ୍ଳଜାନ ତକ ମାଛ ଶେଷ କରିଦେବ ଓ ଅମ୍ଳଜାନ ବିହୀନ ପାଣିରେ ଅଣନିଶ୍ୱାସୀ ହୋଇ ମରିଯିବ ।

ପବନ ଓ ପାଣିରୁ ଅମ୍ଳଜାନ ଗ୍ରହଣ କରି ରକ୍ତରେ ମିଶାଇବା ପାଇଁ ଦୁଇ ପ୍ରକାରର ଅମ୍ଳଜାନ ଛଣା କାରଖାନା ରହିଛି । ଗୋଟିଏ ହେଲା ଫୁସ୍ ଫୁସ୍ ଓ ଅନ୍ୟଟି ହେଲା ଗାଲି ।

ଆମ ଛାତି ଭିତରେ ଯେଉଁ ଫୁସ୍ ଫୁସ୍ ବା ଫୁଲ କଲିଜା (ଲଙ୍ଗସ୍) ଅଛି ତା ଭିତରେ ଆମ ନାକବାଟେ ପବନ ପଶିଯାଏ । ଦେହର ଅଙ୍ଗାରକାମ୍ଳ ବାଷ୍ପମିଶା ରକ୍ତକୁ ହୃତ୍‌ପିଣ୍ଡ ସେହି ଫୁସ୍ ଫୁସ୍‌କୁ ପଠାଇ ଦିଏ । ସେଠି ଗ୍ୟାସ ବା ବାଷ୍ପ ବଦଳାବଦଳି କାମ ହୋଇ ଯାଏ । ଫୁସ୍ ଫୁସ୍‌ର କାମ ହେଲା ରକ୍ତରୁ ଅଙ୍ଗାରାମ୍ଳ ବାଷ୍ପକୁ ଘୁଷିନେଇ ନାକବାଟେ ପଦାକୁ ବାହାର କରି ପବନରେ ଛାଡ଼ି ଦେବ ଓ ଭିତରକୁ ଯାଉଥିବା ପବନରୁ ଅମ୍ଳଜାନକୁ ନେଇ ରକ୍ତରେ ମିଶାଇ ଦେବ । ଫୁସ୍ ଫୁସ୍‌କୁ ଆସିଲା ବେଳେ ରକ୍ତ ନୀଳ ଦେଖା ଯାଉଥାଏ, କାରଣ ସେଥିରେ ଅଙ୍ଗାରାମ୍ଳ ବାଷ୍ପ ଘୋଳି ହୋଇ ରହିଥାଏ—ଫୁସ୍ ଫୁସ୍ ଭିତରେ ଅମ୍ଳଜାନ ମିଶି ଗଲେ ରକ୍ତ ପୁଣି ଲାଲ ହୋଇ ଯାଏ ।

ମାଛର ଫୁସ୍ ଫୁସ୍ ନାହିଁ—ଅଛି ଗାଲି । ପାଣିରେ ପହଁରିଲା ବେଳେ ମାଛ ବରାବର ପାଟି ଫାଙ୍କୁ ଫାଙ୍କୁ କରୁଥାଏ । ଆମେ ହୁଏତ ଭାବୁ ସେ କେବଳ ଖାଇବା ପାଇଁ ସେପରି କରୁଛି । କିନ୍ତୁ ପ୍ରଧାନତଃ ନିଶ୍ୱାସ ନେବା ପାଇଁ ସେ ସେପରି କରୁଥାଏ । ପାଟିବାଟେ ପାଣି ଭର୍ତ୍ତି କରି ଗାଲି ବାଟେ ଦେଇ ପଛଆଡ଼କୁ ସେ ଚଳାଇ ଦେଉଥାଏ । ତେଣୁ ଦେହରୁ ସୂକ୍ଷ୍ମ ସୂକ୍ଷ୍ମ ରକ୍ତନଳୀ ଗୁଡ଼ିଏ ଆସି ଗାଲି ଦେହରେ ଲାଗିଥାଏ । ମଣିଷର ଫୁସ୍ ଫୁସ୍ ଭିତରେ ଯେଉଁ କାମ ହେଉଛି ମାଛର ଗାଲି ଭିତରେ ଠିକ ସେହି କାମ ହେଉଥାଏ । 'ରକ୍ତରେ ବାଷ୍ପ ବଦଳା ବଦଳି ବା ରକ୍ତ ଶୋଧନ .କାମ ଚାଲିଥାଏ । ସେହି କାମଟା ପାଣି ବାହାରେ ପଦାରେ ହୋଇ ପାରିବ ନାହିଁ । ପଦାରେ ଅସରନ୍ତି ଅମ୍ଳଜାନ ବାଷ୍ପ ରହିଥିଲେ ମଧ୍ୟ ମାଛ ବିଚରା "ଅମ୍ଳଜାନ ଅଭାବ"ରେ ମରି-ଯାଏ । ପାଣି ଭିତରେ ଅମ୍ଳଜାନ ବାଷ୍ପ ଥିଲେ ମଧ୍ୟ ମଣିଷ

ଅମ୍ଳଜାନ ଲୋକରେ ମରିଯାଏ । ଯେଉଁଠି ମାଛର ଲୋକ ସେଇଠି ମଣିଷର ପେଟପୁର ଓ ମଣିଷର ଲୋକ ସ୍ଥାନରେ, ମାଛର ପେଟ ପୁର ! ଗାଲଟା କେଡ଼େ ଲାଲ ଦେଖାଯାଏ, ଅମ୍ଳଜାନ ସମ୍ପର୍କରେ ଆସିଲେ ରକ୍ତ ଲାଲ ଥାଇଁ ଯିବାରହିଁ କଥା ।

ଅଫ୍ରିକାରେ ଗୋଟାଏ ଜାତିର ମାଛଙ୍କର ଗାଲ ସାଙ୍ଗକୁ ଫୁସ୍ ଫୁସ୍ ମଧ୍ୟ ଅଛି । ତେଣୁ ସେମାନେ ପାଣି ବାହାରେ ଶୁଖିଲା ପଙ୍କ ଭିତରେ ମାସ ମାସ ଧରି ରହିଯାନ୍ତି, ପାଣି ଆସିଗଲେ ପୁଣି ଆସି ମାଛଭଳି ନିଶ୍ୱାସ ନିଅନ୍ତି । ଆମ ଗଡ଼ିଆ କଉ ମଧ୍ୟ ସେହି ଜାତିର ।

ଏହି ନିଶ୍ୱାସ ନେବା କଥାଟା ଏତେ ବୁଝାଇବାର ଉଦ୍ଦେଶ୍ୟ ହେଉଛି ସାଆଁଳଠାରୁ ବଡ ମାଛ ପର୍ଯ୍ୟନ୍ତ—ସମସ୍ତଙ୍କ ଯତ୍ନ ନେଲାବେଳେ ଦେଖିବାକୁ ହେବ ପାଣିରେ ଯେପରି ସେମାନେ ଯଥେଷ୍ଟ ଅମ୍ଳଜାନ ପାଆନ୍ତି ଓ ପାଣିରେ ଅତ୍ୟଧିକ ପରିମାଣରେ ଅଙ୍ଗାରକାମ୍ଳ ରହି ନଯାଏ । ସମୟେ ସମୟେ ମାଛଗୁଡ଼ାକ "ବଉଳି" ଯାନ୍ତି—ପାଣି ଉପରକୁ ଉଠି ଆସି ବଳକରେ ପାଟି ଫାକୁଫାକୁ କରୁଥାନ୍ତି । ଦେଖୁ ଦେଖୁ ଶହ ଶହ ମାଛ ମରିଯାନ୍ତି । ତା'ର କାରଣ ହେଉଛି ପାଣି ଭିତରେ କୌଣସି କାରଣରୁ ବେଶି ଗୁଡ଼ାଏ ଅଙ୍ଗାରକାମ୍ଳ ବାଷ୍ପ ମିଶିଯାଏ ଓ ଅମ୍ଳଜାନ ଭାଗ କମ୍ ହୋଇଯାଏ । ସେଭଳି କ୍ଷେତ୍ରରେ ପ୍ରତିକାର ନକଲେ ମାଛତକ ମରିଯିବେ । ହାଣ୍ଡି ଭିତରେ ସାଆଁଳମାନଙ୍କୁ ଏକସ୍ଥାନରୁ ଅନ୍ୟ ସ୍ଥାନକୁ ନେଲାବେଳେ ଅନେକଗୁଡ଼ାଏ ମରିଯିବାର କାରଣ ହେଉଛି ସବୁ ସାଆଁଳ ଖେଳିଲାବେଳେ ତାଙ୍କ ଦେହରୁ ଅଙ୍ଗାରାମ୍ଳ ବାଷ୍ପ ବାହାରି ହାଣ୍ଡି ପାଣିରେ ମିଶି ଯାଉଥାଏ । କ୍ରମେ ବେଶୀ ଅଙ୍ଗାରାମ୍ଳ ବାଷ୍ପ ପାଣିରେ ମିଶିଲାରୁ ସେମାନେ ଅଣ-ନିଶ୍ୱାସୀ

ହୋଇ ମରିଯାନ୍ତି । ପାଣିଟାକୁ କଷ୍ଟକର ଚବର୍ଟବ କରି ଦେଉଥିଲେ, ଚହଲାଇ ଦେଉଥିଲେ ଅଧିକ ଅମ୍ଳଜାନ ସେଥିରେ ମିଶିଯାଏ । ବେଶି ଦୂରକୁ ନେଲେ ମଝିରେ ମଝିରେ ପାଣି ବଦଳାଇ ଦିଆଯାଏ ଓ ଯାଆଁଳ କମ ସଂଖ୍ୟାରେ ମରନ୍ତି । ଯେ ଖଣ୍ଡ ତଳେ କେତେକ ପ୍ରକାରର ଧାତୁ ଜିନିଷ ରହିଲେ ଗୁଡ଼ାଏ ଅଙ୍ଗାରାମ୍ଳ ବାଷ୍ପର ସୃଷ୍ଟି ହୋଇଯାଏ । ଗୋଟାଏ ଗୋଟାଏ ଦିନରେ ପାଗ ଏମିତି ହୋଇଯାଏ ଯେ ପାଣିରୁ ହଠାତ୍ ଅମ୍ଳଜାନ ଛୁଟିଯାଏ ।

ପାଣିର ଗୋଟାଏ ଗୁଣ ହେଲା ଅଙ୍ଗାରାମ୍ଳ ବାଷ୍ପକୁ ନିଜ ଦେହରେ ସହଜରେ ଓ ବହୁ ପରିମାଣରେ ମିଶାଇ ଦିଏ ବା ଗଳାଇ ଦିଏ—ଅମ୍ଳଜାନକୁ ବେଶି ମିଶାଇ ନିଏ ନାହିଁ । ଦୁଇଟା ଭିନ୍ନ ଭିନ୍ନ ନଳୀରେ ସମାନ ପରିମାଣରେ ଅମ୍ଳଜାନ ଓ ଅଙ୍ଗାରାମ୍ଳ ବାଷ୍ପ ରଖି ସମାନ ପରିମାଣରେ ପାଣି ପୂରାଇଲେ ଦେଖାଯିବ ଯେ ପାଣି ଯେତିକି ଅମ୍ଳଜାନ ମିଶାଇ ନେଉଛି, ତା'ର କୋଡ଼ିଏ ପଚାଶ ଗୁଣ ଅଙ୍ଗାରାମ୍ଳ ବାଷ୍ପ ମିଶାଇ ନେଉଛି । ବିଷାକ୍ତ ଅଙ୍ଗାରାମ୍ଳ ବାଷ୍ପ ପାଇଁ ପାଣିର ଏହି ସ୍ୱାଭାବିକ ମମତା ଯୋଗୁଁ ଅନେକ ସମୟରେ ବିଚରା ମାଛମାନେ ବିପଦରେ ପଡ଼ନ୍ତି ।

ପ୍ରାଣୀ ମାନେ ହିଁ ଅମ୍ଳଜାନ ନିଅନ୍ତି ଓ ଅଙ୍ଗାରାମ୍ଳ ଛାଡ଼ନ୍ତି । କିନ୍ତୁ ଉଦ୍ଭିଦ ବା ଗଛମାନେ ତା'ର ଠିକ୍ ଓଲଟା କରନ୍ତି । ସେମାନେ ପତ୍ରବାଟେ ନିଶ୍ୱାସ ନିଅନ୍ତି । ହେଲେ ମଧ୍ୟ ତାଙ୍କର କାମ ହେଲା ପବନରୁ ବା ପାଣିରୁ ଅଙ୍ଗାରାମ୍ଳକୁ ନେଇ ଦାଇ ଦେହ ବୃଦ୍ଧି କରନ୍ତି ଓ ଅମ୍ଳଜାନ ବାଷ୍ପଟିକୁ ବାହାର କରିଦିଅନ୍ତି । ଗଛର ଏହି ଅଦ୍ଭୁତ ଗୁଣ ଥିବାରୁ ଆମ ବାୟୁମଣ୍ଡଳରେ ଅଙ୍ଗାରାମ୍ଳ ବାଷ୍ପ ଭାଗ ବେଶି ହୋଇ ଯାଉନାହିଁ—ଆୟୁ ବାୟୁ ସମାନ

ଉଦ୍ଭିଦ ଭଲ କାମ ହେଉଛି । ସେଇଥିପାଇଁ ଏଥିକୁ ପବନ-ଶୋଧନ କାରଖାନା ବୋଲି କୁହାଯାଏ । ଯେଉଁମାନେ ବଡ଼ ବଡ଼ କାଚ ବାକ୍ସ ଭଳି କରି ଘରେ ସଉକରେ ମାଛ ପାଳନ୍ତି ବା "ମାଛ-ଚିଡ଼ିଆଖାନା"ରେ କାଚ ବାକ୍ସ ଭିତରେ ଗୋଟାଏ ପ୍ରକାରର ଗଛ ଲଗାଇ ଦେଇଥାନ୍ତି, ସେହି ଗଛ ପାଣି ଦେହରୁ ଅଙ୍ଗାରାମ୍ଳ ବାଷ୍ପତକ ନେଇ ଅମ୍ଳଜାନ ବାଷ୍ପ ଛାଡ଼ି ପାଣି ଶୁଦ୍ଧିବା କାମ ଚଳାଇଥାଏ । ପାଣିଶୋଧନ କାମ କରି ଏଗୁଡ଼ିକ ମାଛକୁ ତା' ଭିତରେ ବଞ୍ଚିବାରେ ସାହାଯ୍ୟ କରନ୍ତି । ପୋଖରୀରେ ମଧ୍ୟ ଅତି ଛୋଟ ଛୋଟ ଅସଂଖ୍ୟ ଉଦ୍ଭିଦ ଭାସି ପାଣିରୁ ଅଙ୍ଗାରାମ୍ଳ ବାଷ୍ପ ଶୁଖିବା କାମ କରୁଥାନ୍ତି । ସେଗୁଡ଼ିକ ମାଛ ବା ଅନ୍ୟ ପୋକଙ୍କର ଖାଦ୍ୟ ହେବା ସଙ୍ଗେ ସଙ୍ଗେ ଏହି ଅଧିକା—ଅଥଚ ଅତି ଗୁରୁତ୍ୱପୂର୍ଣ୍ଣ ଓ ଜରୁରୀ କାମଟା କରନ୍ତି ।

ଏତ ଗଲା ନିଶ୍ୱାସ ନେବାର ଅସଲ କଥା । ଅନ୍ୟଟି ହେଲା ଖାଇବା ଢଙ୍ଗ ।

ବର୍ତ୍ତମାନ ଆମେ ଏତିକି ଜାଣିଲେ ଯଥେଷ୍ଟ ହେବ ଯେ ମାଛଙ୍କ ପାଣି ରାଜ୍ୟରେ ସତେ ଯେପରି 'ସ୍ୱର୍ଗ-ମର୍ତ୍ତ୍ୟ-ପାତାଳ' ଉଦ୍ଭିଛି । କେତେକ ଜାତିର ମାଛ ନିଜର ଖାଦ୍ୟ ସଂଗ୍ରହ କାମଟା ପାଣିର ଉପର ଅଂଶରେହିଁ କରନ୍ତି । ସେମାନେ ବେଶୀ ଗଭୀରକୁ ଯାଇ ପାଣିତଳୁ ଖାଦ୍ୟ ଖାଆନ୍ତି ନାହିଁ । ଆଉ କେତେକ ଉପର ପାଣି ଓ ମଝି ପାଣିରୁହିଁ ଖାଦ୍ୟ ଯୋଗାଡ଼ କରନ୍ତି । ସେମାନଙ୍କର ସ୍ୱଭାବ ନୁହେଁ ପୋଖରୀ ତଳୁ ପଙ୍କରୁ ଖାଦ୍ୟ ଖାଇବା । ଆଉ କେତେକ ଅଛନ୍ତି—କେବଳ ପାଣି ତଳେ ପଙ୍କରେ ବା କାଦୁଅରେ ଚରନ୍ତି । ସେମାନେ ଉପର ପାଣିକୁ ଆସି ତାଙ୍କ ଉପଯୋଗୀ ଖାଇବା ଯୋଗାଡ଼ କରି ପାରନ୍ତିନାହିଁ । ଏହି ତିନି ପ୍ରକାର ସ୍ୱଭାବର

ମାଛଙ୍କର ପାଟି ଓ ମୁଣ୍ଡର ଗଠନ ମଧ୍ୟ ନିଜ ସ୍ୱଭାବକୁ ଖାପିଲା ଭଳି ହୋଇଛି ।

ଭାକୁର କେବେ ନଈ ବା ପୋଖରୀ ତଳୁ ଖାଦ୍ୟ ଯୋଗାଡ଼ କରେ ନାହିଁ । ସେ ଉପର ଓ ମଝି ପାଣିରେ ବୁଲୁଥାଏ ତା ପେଟ ପୂରାଇବା ପାଇଁ । ସେଥିପାଇଁ କାରଣରୁ ତା ପାଟିଟାର ଗଢ଼ଣ ଉପର ମୁହାଁ । ପାଣି ତଳେ ବାଲି, କାଦୁଅ ବା ପଙ୍କରେ ଯେତେ ଖାଦ୍ୟ ପୂରି ରହିଥିଲେ ମଧ୍ୟ ଭାକୁରର ପେଟ ପୂରିବ ନାହିଁ । ରୋହିର ଚରା ଭୂଇଁ ହେଲା ମଝି ପାଣି ଓ ପାଣି ତଳ । ଆମେ ବର୍ତ୍ତମାନ କହି ପାରିବା ତା' ମୁହଁଟାକୁ ଏଭଳି କାହିଁକି କରା ଯାଇଛି । କିନ୍ତୁ ମିରିକାଲୀଟା ହେଲା 'ତଳଚରା' ମାଛ । କାଦୁଅ ପଙ୍କ ଭିତରୁ ଖାଦ୍ୟ ଯୋଗାଡ଼ କରିବାରେ ସେ ଧୁରନ୍ଧର ଓ ତା ପାଟିଟା ସେଥିପାଇଁ କାରଣରୁ ତଳମୁହାଁ । ସେ ପାଣି ଉପରେ ଆସି ଖେଳିବା ଦେଖା ଯାଏ ନାହିଁ ।

ଏହି ତିନୋଟି ଉଦାହରଣରୁ ଆମେ ଏଣିକି ବୁଝିପାରିବା ଗୋଟାଏ ଗୋଟାଏ ପୋଖରୀରେ ଭାକୁର କାହିଁକି ଭଲ ବଢ଼ନ୍ତି— ମିରିକାଲୀ ଭଲ ଉଧାନ୍ତି ନାହିଁ । ତା'ର ଠିକ ଓଲଟା ମଧ୍ୟ ଆଉ ଗୋଟାଏ ପୋଖରୀରେ ହୋଇପାରେ—ମିରିକାଲୀ ଖୁବ ଭଲ ବଢ଼ୁଛି ତ ଭାକୁର ଉଧାଉ ନାହିଁ । କେଉଁ ପୋଖରୀରେ କେଉଁ ପ୍ରକାରର ଖାଦ୍ୟ ଯଥେଷ୍ଟ ମିଳେ ତା'ର ଉପରେ ନିର୍ଭର କରେ, କେଉଁ ଜାତିର ମାଛ ସେଠାରେ ବଢ଼ିବେ ।

ଭାକୁରଟା ହେଲା 'ଉପର-ଚରା' ମାଛ । ଆମେ ଯଦି ବସ୍ତବିକା ଯେ ଗୋଟାଏ ଗୋଟାଏ ପୋଖରୀକୁ ଖୁବ ଗଭୀର କରି ଦେଲେ କେତିଗୁଡ଼ାଏ ଭାକୁର ରଖିଦେବା ତେବେ ନିଶ୍ଚୟ ହତାଶ

ହେବା । ପୋଖରୀ କମ ବେଶି ଗଭୀର ହେବା ଢଙ୍ଗରେ ଭାକୁରର କିଛି ସମ୍ପର୍କ ନାହିଁ । ତା ଚରିଭୁଇଁ ଜାଣି ଉପର ସ୍ତରର ପାଣିରେ ।

ଭାକୁର, ରୋହି, ମିରିକାଳିଙ୍କ ବିଷୟରେ ଯେଉଁ କଥା କୁହାଗଲା ସେମାନଙ୍କ ଯାଆଁଳଙ୍କୁ ସେ ନିୟମ ସାଧାରଣତଃ ଖାଟେନାହିଁ ।

ଏତ ଗଲା ଭିନ୍ନ ଭିନ୍ନ ମାଛ କି ଢଙ୍ଗରେ ଖାଆନ୍ତି ବା ସେମାନଙ୍କ ଚରିଭୁଇଁ କେଉଁଠା । କେଉଁ ମାଛର ପ୍ରିୟ ଖାଦ୍ୟ କଅଣ ସେତକ ମଧ୍ୟ ଜାଣିବା ଖୁବ ଜରୁରୀ । ପରବର୍ତ୍ତୀ ଅଧ୍ୟାୟମାନଙ୍କରେ ତାର ଆଲୋଚନା କରିବା ।

---

# କି ମାଛ ଚାଷ କରାଯିବ

ଆଦ୍ୟ ଅବତାରରେ ହରି ମୀନରୂପ ଧରି ଜନ୍ମି ଥିବା କଥାରେ ବୋଧହୁଏ ଏତିକି ସତ୍ୟ ଯେ ପୃଥିବୀରେ ପ୍ରଥମେ ମାଛହିଁ ସୃଷ୍ଟି କରାଯାଇଥିଲା । କୋଟି କୋଟି ବର୍ଷ ତଳେ ସମୁଦ୍ରରୁ କେତେକ ପାହାଡ଼ ଉପରକୁ ଉଠି ଆସିଛି । ସେହି ପାହାଡ଼ ଭିତରେ ମାଛର ଗୁଣ୍ଡ ରହିଛି । ସେଥିରୁ ପ୍ରମାଣ ମିଳୁଛି ଯେ ସେତେବେଳେ ମଧ୍ୟ ସମୁଦ୍ରରେ ମାଛ ଖେଳୁଥିଲେ । କେତେକ ପଣ୍ଡିତ କହନ୍ତି—ସେତେବେଳେ ଗୋଟାଏ ଗୋଟାଏ ମାଛଙ୍କର ଗୋଡ଼ ଥିଲା । ଗୋଟିଏ ପ୍ରକାରର ବିଚିତ୍ର ମାଛ ମିଳୁଛି । ସେ ମାଛ ପୃଥିବୀରୁ ୭,୦୦୦୦୦୦୦ (ସାତ କୋଟି) ବର୍ଷ ତଳେ ଲୋପ ପାଇ ଯାଇଥିଲା ବୋଲି ପ୍ରାଣୀ ବିଦ୍ୟାବିତ ପଣ୍ଡିତମାନେ ଧରି ନେଇଥିଲେ । କିନ୍ତୁ ୧୯୩୮ ମସିହାରେ ଏ ମାଛଟି ଧରା ପଡ଼ିଲା । ଏହାର ନାମ "ସିଲକାନ୍ଥ" । ତା ବେକ ତଳର ପକ୍ଷୀ, ଗୋଡ଼ଭଳି

ଦେଖା ଯାଉଛି । ସେ ମାଛ ଧରା ହେବା ଖବରରେ ପୃଥିବୀରେ ଏକ ପ୍ରକାର ଚହଳ ପଡ଼ି ଯାଇଥିଲା । ସେହିଭଳି ଆଉ ଗୋଟାଏ ଧରିବା ପାଇଁ ହଜାର ହଜାର ଟଙ୍କାର ପୁରସ୍କାର ଘୋଷଣା କରାଗଲା । ଚଉଦ ବର୍ଷ ପରେ ୧୯୫୨ରେ ଦ୍ୱିତୀୟଟି ଧରା ହେଲା ଓ ବହୁ ଚେଷ୍ଟା କରି ଏପର୍ଯ୍ୟନ୍ତ କେବଳ ୯ଟି ମାତ୍ର ଧରା ହୋଇ ପାରିଛି । ଏହି ମାଛଠାରୁ ଆରମ୍ଭ କରି ଆମ ନେଉଳ ପର୍ଯ୍ୟନ୍ତ ପ୍ରାୟ ହଜାର ହଜାର ଜାତିର ମାଛ ଆମ ପୃଥିବୀରେ ଅଛନ୍ତି । ଏଥିଭିତରୁ ଅତି ଅଧିକ ଭାଗ ଲୁଣି ମାଛ । ମଧୁର ମାଛମାନଙ୍କ ସଂଖ୍ୟା ଖୁବ୍ କମ ।

କିନ୍ତୁ ଆମ ଗଡ଼ିଆ ପୋଖରୀରେ ସାଧାରଣତଃ ସାତ ଆଠ ପ୍ରକାରର ମାଛ ଚାଷ କରି ପାରିବା । ରୋହୁ, ଭାକୁର, ମିରିକାଳି ଓ କଳାବାଇଁସି ସେମାନଙ୍କ ଭିତରେ ପ୍ରଧାନ । ଏ ଚାରି ପ୍ରକାରର ମାଛ ଏକ ଜାତିର । ଇଂରାଜୀରେ ସେମାନଙ୍କୁ 'କାର୍ପ (Carp) ବୋଲି କୁହାଯାଏ । ସେହିମାନଙ୍କୁ ପାଳିଲେ ଲାଭ ଅଛି । କାରଣ ସେମାନେ ଜଲ୍‌ଦି ବଢ଼ନ୍ତି । ଅନ୍ୟ କେତେ ଜାତିର ମାଛ ଅଳ୍ପ ପରିମାଣରେ ଚାଷ କରାଯାଏ ସତ—କିନ୍ତୁ ସେଭଳି ଲାଭଜନକ ନୁହେଁ । ଭାରତର ଅନ୍ୟାନ୍ୟ ଅଞ୍ଚଳରେ କେତେକ ଜାତିର ଲୁଣି ମାଛର ଚାଷ ମଧ୍ୟ ଆରମ୍ଭ ହୋଇଛି ।

ଭାକୁର ଜାତୀୟ ମାଛ ନଈରେ ରହନ୍ତି ଓ ବର୍ଷାଦିନେ (ଜନ୍ମରୁ ଅଗଷ୍ଟ ଭିତରେ) ଅଣ୍ଡା ଦିଅନ୍ତି ବା ଯାଆଁଳ ଛାଡ଼ନ୍ତି । ଏମାନେ କୋଟି କୋଟି ସଂଖ୍ୟାରେ ଅଣ୍ଡା ଦେବା ଫଳରେ ଆମେ ନଈ ବଢ଼ି ବେଳେ ଟିକିଏ ଚେଷ୍ଟା କଲେ ଯେତେଇଚ୍ଛା ସେତେ ମାଛ ଅଣ୍ଡା ବା ଯାଆଁଳ ଧରି ନେଇପାରୁଛୁ । ବଙ୍ଗଳା, ବିହାର, ଓଡ଼ିଶା ଓ ଆସାମରେ ଏ ଜାତିର ମାଛ ବେଶି ମିଳନ୍ତି । ଏମାନେ

ପୋଖରୀରେ ଅଣ୍ଡା ବା ଯାଆଁଳ ଛାଡ଼ନ୍ତି ନାହିଁ ଭାବିଲେ ଚଳେ । ଆମ ଓଡ଼ିଶାରେ କୌଣସି ଅଞ୍ଚଳରେ ସେମାନେ ପୋଖରୀରେ ଯାଆଁଳ ଦିଅନ୍ତି ନାହିଁ । ବଙ୍ଗଳାର କେତେକ ସ୍ଥାନରେ "ବନ୍ଧ" ନାମକ ପୋଖରୀରେ କୃତ୍ରିମ କରି ଯାଆଁଳ ଦେବାର ଦେଖା ଯାଇଛି । ଆମ ଓଡ଼ିଶାରେ ଓ ବଙ୍ଗଳାରେ ବହୁ ଲୋକ ଯାଆଁଳ ଧରି ବିକ୍ରୀ କରି ବହୁତ ରୋଜଗାର କରନ୍ତି ।

---

## ଅଣ୍ଡା ଦେବା ପ୍ରଣାଳୀ

ଆମ ପୋଖରୀରେ ଶେଉଳ, ଗଡ଼ିଶା ପ୍ରଭୃତି କେତେକ ଜାତିର ଅଜାଡିଆ ମାଛ ଯାଆଁଳ ଖେଳେଇବା ଦେଖି ଆମର ହୁଏତ ମନେ ହେବ ଯେ ସବୁ ମାଛଙ୍କର ଛୁଆଙ୍କ ସହିତ ଏହିଭଳି ସମ୍ପର୍କ ରହିଛି; କିନ୍ତୁ ପ୍ରକୃତରେ ତା ନୁହେଁ ।

ଆମେ ଦେଖୁ ଯେ ପୁରୁଷ ସହିତ ସ୍ତ୍ରୀର ମିଳନ ହୁଏ ଓ ସ୍ତ୍ରୀ ଗର୍ଭରେ ହିଁ ସନ୍ତାନର ସୃଷ୍ଟି ହୁଏ । ପକ୍ଷୀ ଜାତି ପ୍ରତି ମଧ୍ୟ ସେହି ନିୟମ ଖଟେ । ମାଈ ପକ୍ଷୀ ପେଟ ଭିତରେହିଁ ପୁରୁଷ ପକ୍ଷୀର ବୀର୍ଯ୍ୟ ସାହାଯ୍ୟରେ ସନ୍ତାନର ସୃଷ୍ଟି ହୋଇଥାଏ—ବାହାରେ ଅଣ୍ଡାକୁ ଉଷୁମ କରି ଛୁଆ ବାହାର କରିବା କାମହିଁ ବାକି ଥାଏ ।

କିନ୍ତୁ ପ୍ରାୟ ସବୁ ମାଛଙ୍କର ସନ୍ତାନ ଜନ୍ମ କରିବାର ପ୍ରଣାଳୀ ସମ୍ପୂର୍ଣ୍ଣ ଭିନ୍ନ ଓ ବିସ୍ମୟକର । ମା ପେଟରେ ସନ୍ତାନର ସୃଷ୍ଟି ହୁଏ ନାହିଁ । ଉପଯୁକ୍ତ ସମୟ ଆସିଲେ ମାଈ ମାଛ ପାଣିରେ ଅଣ୍ଡା ଦେଇ ଦିଏ । ଅଣ୍ଡିରା ମାଛ ପାଣିରେ ତାର ବୀର୍ଯ୍ୟ ଛାଡ଼ିଦିଏ । ପାଣିରେହିଁ ମାଈ ମାଛର ଅଣ୍ଡା ସହିତ ଅଣ୍ଡିରା ମାଛର ବୀର୍ଯ୍ୟର

ଭେଟ ହୁଏ ଓ ତାରି ଫଳରେ ମାଛ-ସନ୍ତାନର ପ୍ରଥମ ସୃଷ୍ଟି ହୁଏ । ତେଣିକି ସେ ଅଣ୍ଡାର କି ଅବସ୍ଥା ହେଲା, ବାପ ବା ମା ମାଛ କେହି ଜାଣନ୍ତି ନାହିଁ । ପାଣିରେ ସେଗୁଡ଼ିକ ଭାସିଯାଏ ଓ ସେଥିରୁ ମାଛ ଯାଆଁଳ ବାହାରନ୍ତି । ଭାକୁର ପ୍ରଭୃତି ମାଛଙ୍କର ଠିକ୍ ଏ ବିଶେଷତ୍ୱ ଅଛି । ମାଈ ମାଛଟି ଲକ୍ଷ ଲକ୍ଷ ଅଣ୍ଡା ଦେବାରେ ଲାଗିଥାଏ—ଅଣ୍ଡିରା ମାଛ ଯଥେଷ୍ଟ ବୀର୍ଯ୍ୟ ନ ଛୁଆଁଇଲେ ସବୁ ଅଣ୍ଡା ଗୁଡ଼ାକରୁ ଛୁଆ ହୁଅନ୍ତି ନାହିଁ । ଗୋଟାଏ ମାଈ ମାଛ ଅଣ୍ଡା ଦେଲାବେଳେ ଅନେକ ସମୟରେ ଦୁଇ ତିନିଟା ଅଣ୍ଡିରା ବୀର୍ଯ୍ୟ ଛିଂଚିବାରେ ଲାଗି ଥାଆନ୍ତି । ଫଳରେ ଅଣ୍ଡାଗୁଡ଼ାକ ଅକାରଣ ହୋଇଯାଏ ନାହିଁ । ପ୍ରାୟ ସବୁଥିରୁ ଛୁଆ ହୁଏ । ସମୟେ ସମୟେ ଅଣ୍ଡିରା ମାଛଙ୍କର ଏଥି ପାଇଁ ଝଗଡ଼ା ହୋଇଯାଏ ।

ପଥର କାଦୁ, ଶିଉଳି ବା ସେହିଭଳି ଅନ୍ୟ କୌଣସି ପଦାର୍ଥରେ ଏ ଅଣ୍ଡାଗୁଡ଼ିକ ଲାଗି ରହିଯାଏ ଓ ବଢ଼ି ପାଣିରେ ଭାସି ଚାଲି ଆସେ । ନଈରେ ଫେଣ ଧରି ଗଡ଼ିଆ ପୋଖରୀରେ ଛାଡ଼ି ଦିଆଯାଏ—ସେ ଫେଣ ଭିତରେ ମାଛ ଅଣ୍ଡା ଥାଏ ।

ମାଛ ଯେତେବେଳେ ତାର ଅଣ୍ଡାକୁ ଏ ଭଳି ଅନାଥ କରି ଛାଡ଼ି ଚାଲିଯାଏ, ସେଗୁଡ଼ିକ କି ଭଳି ଯେ ଏତେ ସଂଖ୍ୟାରେ ଯାଆଁଳରେ ପରିଣତ ହୁଅନ୍ତି ସେ କଥା ଭାବିଲେ ଆଶ୍ଚର୍ଯ୍ୟ ଲାଗେ । କିନ୍ତୁ ପ୍ରକୃତିର ନିୟମ ବିଚିତ୍ର । ମାଛଗୁଡ଼ିକ ଏତେ ସଂଖ୍ୟାରେ ଅଣ୍ଡା ଦିଅନ୍ତି ଯେ ଅନେକଗୁଡ଼ାଏ ମରିଗଲେ ମଧ୍ୟ ଅସରନ୍ତି ମାଛ ରହିଯାଆନ୍ତି । ଗୋଟିଏ ଦୁଇ ସେରିଆ ଭାକୁର ବା ରୋହି ଥରକରେ ଲକ୍ଷ ଲକ୍ଷ ଅଣ୍ଡା ଦିଏ । ମାଛକୁ ପ୍ରକୃତି ଏହି ଭଳି ହାତ ଫିଟା ଦାନ ଦେଇ ଥିବାରୁ, କେତେ ଗୁଡ଼ିକର ମୁଣ୍ଡ କାଟିର ହେଲେ ମଧ୍ୟ ଆମେ ଦେଖୁଛୁ ପାଣିରେ ଅସରନ୍ତି ମାଛ

ରହିଛନ୍ତି । କେତେକ ପ୍ରଶ୍ନ ଉଠୁଛି ଆମେ ସେମାନଙ୍କୁ ଖାଇ ବଢ଼େଇ ମୁତେଇ ଆମ ଖାଦ୍ୟ ସମସ୍ୟାର ସମାଧାନ କରି ପାରିବା କି ନାହିଁ । ସବୁ କଥା ନିର୍ଭର କରୁଛି ଆମ ଯୋଜନା ଉପରେ ।

---

# ମାଛ ପାଇଁ ପାଣି

ଆମ ଦେଶଟା ଅତି ବିସ୍ତୃତ ହୋଇଥିବାରୁ ନାନା ପ୍ରକାରର ପାଣି ଦେଖିବାକୁ ପାଉଛୁ । ହିମାଳୟରୁ ବାହାରୁଥିବା ବରଫ ଭଳି ଥଣ୍ଡା ଜଳସ୍ରୋତ ଉତ୍ତରରେ ବହୁଛି—ଦକ୍ଷିଣରେ ରହିଛି କୁମାରିକା ନିକଟସ୍ଥ 'ଉଷ୍ମ' ପାଣି । ଏହି ଦୁଇ ଭିତରେ ନାନା ପ୍ରକାରର ପାଣି ରହିଛି । ସବୁଥିରେ ମାଛ ରହୁଛନ୍ତି ଓ ସେମାନେ ମଧ୍ୟ ନାନା ପ୍ରକାରର । ଦେଶର ଲକ୍ଷ ଲକ୍ଷ ପୋଖରୀ ଗଡ଼ିଆରେ ମାଛ ବଢ଼ୁଥିଲେ ମଧ୍ୟ ସେ ସବୁରେ ଯେ ମାଛଚାଷ ହେଉନାହିଁ ଏକଥା ନିଶ୍ଚୟ । ଅସଂଖ୍ୟ ପାଟ ପଡ଼ିରହିଛି । ଏ ଗୁଡ଼ିକର କେହି ଯତ୍ନ ନେଉ ନ ଥିବାରୁ ମଶା ଜନ୍ମୁଛନ୍ତି ଓ ଏ ଦେଶରେ ସର୍ବଗ୍ରାସୀ ମ୍ୟାଲେରିଆ ରୋଗ ବ୍ୟାପୁଛି । ଯୋଜନା ମୁତାବକ ମାଛ ଚାଷକଲେ ମ୍ୟାଲେରିଆ ବନ୍ଦ ହେବା ସଙ୍ଗେ ସଙ୍ଗେ ଦେଶର ଖାଦ୍ୟ ସମସ୍ୟା ଅନେକ ପରିମାଣରେ ସମାଧାନ ହୋଇ ପାରନ୍ତା ।

ପାଣିରେ ମାଛ ରହୁଛନ୍ତି ଠିକ—ମାଛ ପାଇଁ ପାଣିକୁ ଉପଯୁକ୍ତ କରିବା ହେଲା ଆମର କାମ । ଦେଶରେ ମଣିଷ ବଞ୍ଚିବା ଓ ମଣିଷ ବଞ୍ଚିବା ଉପଯୋଗୀ କରି ଦେଶକୁ ଗଢ଼ିବା — ଭିନ୍ନ ଭିନ୍ନ କଥା । ମାଛ ଚାଷ ପାଇଁ ସ୍ୱତନ୍ତ୍ର ଭାବରେ ପୋଖରୀ

ହୋଇଥିବା ପୋଖରୀର ଆଉ ଯତ୍ନ ନ ନେଇ ବର୍ଷପରେ ବର୍ଷ ମାଛ ଚାଷ କଲେ ଗୁଡ଼ାଏ ବେଶି ଶିଉଳି ଓ ଅନ୍ୟାନ୍ୟ 'ପାଣିଗଛ' ଜନ୍ମିଯାଇ ସେ ପୋଖରୀକୁ ମଧ୍ୟ ମାଛଙ୍କ ବଢ଼ିବା ଦୃଷ୍ଟିରୁ ଅନୁପଯୁକ୍ତ କରି ପକାଉଛି—ଯେଉଁ ପୋଖରୀର ମାଛଙ୍କ ଯତ୍ନ ନିଆ ହେଉନାହିଁ ତା କଥା ବା କ'ଣ କହିବା ।

ଫସଲ ପାଇଁ ଉପଯୋଗୀ ମାଟିରେ ଯେଉଳି କାଲସିଅମ୍, ଫସଫରସ ପ୍ରଭୃତି ଦରକାର ମୁତାବକ ନ ରହିଲେ ଫସଲ ଭଲହୁଏ ନାହିଁ । ପାଣିରେ ସେହିଭଳି ଅଙ୍ଗାର (କାର୍ବନ), ଉଦଜାନ (ହାଇଡ୍ରୋଜନ), ଗନ୍ଧକ (ସଲଫର୍), ଯବକ୍ଷାରଜାନ (ନାଇଟ୍ରୋଜେନ), ଫସ୍‌ଫରସ୍, ପୋଟାସିଅମ, ମାଗ୍‌ନେସିଅମ ଲୁହା ପ୍ରଭୃତି ମୂଳ ଉପାଦାନ ନ ରହିଲେ ମାଛ ଭଲ ବଢ଼ିପାରନ୍ତି ନାହିଁ । ଏହା ସାଙ୍ଗକୁ ଖୁବ ଅଳ୍ପ ପରିମାଣରେ ସୋଡ଼ିୟମ୍, କ୍ଲୋରିନ୍, ଫ୍ଲୋରିନ, ସିଲିକନ୍, ମାଙ୍ଗାନିଜ୍, ଆୟୋଡ଼ିନ ଓ ଶଙ୍ଖୁଆ (ଆର୍ସେନିକ) ରହିବା ଦରକାର । ପାଣି ତ ବରାବର ମାଟି ଓ ପବନର ସଂସ୍ପର୍ଶରେ ଆସୁଛି । ପାଣିରେ ମାଟି ଓ ପବନ ସବୁବେଳେ ଗୋଳି ହେଉଥିବାରୁ ଉପରୋକ୍ତ ମୂଳ ଧାତୁଦ୍ରବ୍ୟ ଗୁଡ଼ିକୁ ପାଣି ସେହି ଦୁଇଟିରୁ (ମାଟି ଓ ପବନରୁ) ପାଇଯାଉଛି । କିନ୍ତୁ କେବେକେବେ ଦେଖାଯାଏ ଯେ ବେଶି ସଂଖ୍ୟକ ପୋଖରୀ ଗଡ଼ିଆ ପାଣିରେ ଏହିସବୁ ପଦାର୍ଥର ଅଭାବ ନ ଥିଲେ ମଧ୍ୟ କେତେକ ପୋଖରୀର ପାଣିରେ ଏହାର ଅଭାବ ରହୁଛି ଓ ସେ ଅଭାବ ପୂରଣ କରିବାକୁ ହେବ । ସେଥିପାଇଁ ଚାଷ ଜମିରେ ଖତ ପକାଇଲା ଭଳି ପାଣିରେ ମଧ୍ୟ ଖତ ଦେଇ ତାକୁ "ମାଛ ଚାଷ ପାଇଁ ପାଣି" ବା ମାଛ ଉପଯୋଗୀ ପାଣି କରିବାକୁ ହେବ ।

## କ୍ଷାର ପାଣି ଭଲ

ପାଣିଟା ଦୁଏକ କ୍ଷାର ଯୁକ୍ତ ହୋଇଥିବ ବା ଅମ୍ଳଯୁକ୍ତ । ପାଣିଟା କ୍ଷାର ଆଡ଼କୁ ଢଳିଥିଲେ ମାଛ ଭଲ ବଢ଼ନ୍ତି—ଅମ୍ଳ ଆଡ଼କୁ ଢଳିଥିଲେ ଭଲ ବଢ଼ି ପାରନ୍ତି ନାହିଁ । ତା ବୋଲି ଯେ ଖୁବ ଖାରଆ ପାଣି ମାଛଙ୍କ ପାଇଁ ଭଲ ଏକଥା ବୁଝିବା ଭୁଲ ହେବ । ଏସିଡ଼ ବା ଅମ୍ଳପାଣି ଓ ଖୁବ ଖାରଆ ପାଣି -କେହି ହେଲେ ମାଛଙ୍କ ପାଇଁ ଉପଯୁକ୍ତ ନୁହେଁ । (ପଣ୍ଡିତମାନେ କହନ୍ତି ପୋଖରୀର ପାଣି ପି:ଏଚ: ୭.୫ରୁ ୮.୫ ହେଲେ ଭଲ । ୭.୦ପି:ଏଚ: ତଳ ଅମ୍ଳ ପାଣି ଓ ୮.୫ ପି:ଏଚ:ରୁ ଉପର କ୍ଷାର ପାଣି ମାଛ ଚାଷ ଉପଯୋଗୀ ନୁହେଁ) । ମାଛ ଧରିବା ପବନରୁ ସିଧାସଳଖ ଅମ୍ଳଜାନ ନେଇ ନ ପାରୁଥିବାରୁ ପାଣିରେ ତା' ଦରକାର ମୁତାବକ ଅମ୍ଳଜାନ ଗୋଳିହୋଇ ରହିଥିବା ଦରକାର (ଦଶଲକ୍ଷ ଭାଗରେ ୫ରୁ ୭ ଭାଗ ଅନୁପାତରେ) । ପାଣିର ମାଛ ବଢ଼ାଇବାର ଯେଉଁ ସ୍ୱାଭାବିକ ଶକ୍ତି ଅଛି ଗୋଟିଏ ପୋଖରୀରେ ବାରମ୍ବାର ମାଛ ପାଳିଲା ଫଳରେ ସେ ଶକ୍ତି କମିଯାଏ ଓ ମଝିରେ ମଝିରେ ଖତ ପ୍ରଭୃତି ଦେଇ ତାର ସେ ଶକ୍ତି ଫେରାଇ ଆଣିବାକୁ ପଡ଼େ ।

## ପାଣି ଭିତରେ 'ଜୀବନ-ଚକ୍ର' ଘୂରୁଛି

ପ୍ରକୃତି ଯେଉଁ ପାଣି ସୃଷ୍ଟି କରିଛି ତାକୁ ଟିକିଏ ବଦଳାଇ, କୃତ୍ରିମ ଉପାୟ ପ୍ରୟୋଗ କରି ମାଛ ବଢ଼ିବା ପାଇଁ ଅଧିକ ଉପଯୋଗୀ କରିବା ହେଲା ମାଛଚାଷ । ଏତକ ହୋଇଗଲେ ମାଛ ଚାଷର ଅନ୍ୟ କଥା ଗୁଡ଼ାକ ଅପେକ୍ଷାକୃତ ସହଜ ହୋଇଯାଏ ।

ପ୍ରକୃତ ସୂକ୍ଷ୍ମ ପାଣିକୁ ମାଛଙ୍କ ରହିବା ପାଇଁ ଅଧିକ ଉପଯୋଗୀ କରିବା ପାଇଁ ହେଲେ ପାଣି ଭିତରେ ଗୋଟାଏ 'ଜୀବନ-ଚକ୍ର' କିଭଳି ଘୂରୁଛି ସେକଥା ବୁଝିନେବା ।

ପୋଖରୀ ଭିତରେ 'ଜୀବନ ଚକ୍ର'କୁ ବୁଲାଇବା ପାଇଁ ଏହି ଉପାଦାନଗୁଡ଼ିକ ଦରକାର—ପାଣି ଭିତରେ ଗୋଳି ହୋଇ ରହିଥିବା ଲୁଣ, କାଲସିଅମ୍; ପଦାର୍ଥ ପ୍ରଭୃତି ଆଲୁଅ ଓ ତାପ ଭଳି କେତେକ ଶକ୍ତି; ଅମ୍ଳଜାନ ଓ ଅଙ୍ଗାରକାମ୍ଳ ବାଷ୍ପ । ପୋଖରୀ ଭିତରେ ଅତି ସୂକ୍ଷ୍ମ ସୂକ୍ଷ୍ମ 'ଉଦ୍‌ଭିଦ୍' ଗୁଡ଼ାଏ ଭାସୁଥାନ୍ତି । ସେହି-ଗୁଡ଼ିକ ବହୁ ସଂଖ୍ୟାରେ ଭାସିଲେ ପାଣିଟା ହେଳଆସିଆ ଓ ଶାଗୁଆ ଦେଖାଯାଏ । ସେଗୁଡ଼ିକୁ ଇଂରାଜୀରେ 'ଫାଇଟୋପ୍ଲାଙ୍କଟନ' ବୋଲି କହନ୍ତି । (ଗ୍ରୀକ୍ ଭାଷାରେ ଫାଇଟୋନ୍ ଶବ୍ଦର ଅର୍ଥ ଉଦ୍ଭିଦ ଓ ପ୍ଲାଙ୍କ୍‌ଟୋନ୍ ଶବ୍ଦର ଅର୍ଥ ବୁଲଚଲ କରିବ । ଅନ୍ୟ ସବୁ ଉଦ୍ଭିଦ ଭୂଇଁକୁ ଆଶ୍ରାକରି ଗୋଟିଏ ସ୍ଥାନରେ ରହିଥିବା ସ୍ଥଳେ ଏ ସୂକ୍ଷ୍ମ ସୂକ୍ଷ୍ମ ଉଦ୍ଭିଦ ଗୁଡ଼ିକ ପାଣିରେ ବୁଲଚଲ କରୁଥିବାରୁ ବା ଭାସୁ-ଥିବାରୁ ଏମାନଙ୍କ ନାମ 'ଫାଇଟୋ ପ୍ଲାଙ୍କ୍‌ଟନ' ଦିଆଯାଇଛି । ଗୋଟାଏ ପ୍ରକାର ଅତି ସୂକ୍ଷ୍ମ ପୋକ ମଧ୍ୟ ପାଣିରେ ବହୁ ସଂଖ୍ୟାରେ ଥାନ୍ତି । ସେମାନଙ୍କୁ କୁହାଯାଏ 'ଜୁ—ପ୍ଲାଙ୍କ୍‌ଟନ୍' । ଗ୍ରୀକ୍ ଭାଷାରୁ 'ଜୁ' ଶବ୍ଦଟି ଆସିଛି । ତାର ଅର୍ଥ ଜୀବ । ) ଏହି ଫାଇଟୋ—ପ୍ଲାଙ୍କ୍‌ଟନ୍ ବା 'ଭସା-ଉଦ୍ଭିଦ' ପାଣି ଭିତରେ ବୁଡ଼ିକରି ରହିଥିବା, ଅନ୍ୟ ଅପେକ୍ଷାକୃତ ବଡ଼ ବଡ଼ ଉଦ୍ଭିଦ ଓ କେତେକ ପୋକଙ୍କର କାମ ହେଲା—ସୂର୍ଯ୍ୟ କିରଣ ଓ ପାଣିରେ ଗୋଳି ହୋଇରହିଥିବା ବାଷ୍ପ ସାହାଯ୍ୟରେ ଉପରୋକ୍ତ ଜୀବନହୀନ ଧାତୁଦ୍ରବ୍ୟ ଇତ୍ୟାଦିକୁ ଜଟିଳ ଜୀବନ୍ତ ଉପାଦାନରେ ପରିଣତ କରିବା । ପୋଖରୀ ତଳ ପଙ୍କରେ ଯେଉଁ ସାରଦ୍ରବ୍ୟ ଅଛି ତାକୁ ପଙ୍କରେ ତେରମାରି ରହିଥିବା

ଉଦ୍ଭିଦମାନେ ଖାଇ ବଞ୍ଚନ୍ତି । ଅତି ସୂକ୍ଷ୍ମ ଭାସମାନ ଉଦ୍ଭିଦଙ୍କୁ ଅତିସୂକ୍ଷ୍ମ ଭାସମାନ ଜୀବ ବା ପୋକମାନେ ଖାଇବାରେ ଲାଗିଥାନ୍ତି । ଏହି ପୋକଙ୍କୁ ମାଛମାନେ ଖାଆନ୍ତି । ସୂକ୍ଷ୍ମ ଭାସମାନ ଉଦ୍ଭିଦଗୁଡ଼ିକୁ ମଧ୍ୟ ମାଛ ସିଧାସଳଖେ ପେଟ ଭିତରେ ପୂରାଇଦିଏ । ପାଣିଭିତରେ ବୁଡ଼ି ରହିଥିବା ଉଦ୍ଭିଦଗୁଡ଼ିକ କେତେକ ଜାତିର ମାଛଙ୍କୁ ଖାଦ୍ୟତ ଯୋଗାନ୍ତି—ସେମାନଙ୍କୁ ଆଶ୍ରା କରି ବହୁଜାତିର ଉଦ୍ଭିଦଭୋଜୀ ପୋକ, ପୋକଅଣ୍ଡା ବା ଛୁଆ ଓ ଗେଣ୍ଡାଜାତୀୟ ଜୀବ ରହୁଥିବାରୁ ମାଛକୁ ଅଧିକା ଖାଦ୍ୟ ମିଳିଯାଏ । ପୋଖରୀ ତଳ ପଙ୍କଟା ସତେ ଯେପରି ଗୋଟାଏ 'ପୋକ ବା ଉଦ୍ଭିଦ ରାଜ୍ୟ' । ମୋଟ ଉପରେ ପାଣି ଭିତରେ ଓ ତଳ ପଙ୍କରେ ଥିବା ବହୁଭିନ୍ନ ଜାତିର ଓ ପ୍ରକାରର ଜୀବ ଓ ଉଦ୍ଭିଦ ପରସ୍ପରକୁ ଖାଇ ବା ପରସ୍ପରଠୁ ସାର ସଂଗ୍ରହ କରି ଶେଷରେ ମାଛପେଟକୁ ଯାଇ ମାଛ ସୃଷ୍ଟି କରୁଛନ୍ତି ।

ଏତେଟକ ଗୋଟାଏ 'ଗଠନ ତନ୍ତ୍ର'ର କଥା, ପାଣି ଭିତରେ ଥିବା ନାନା ପ୍ରକାରର ଧାତୁଦ୍ରବ୍ୟ ଓ ବାଷ୍ପ ନାନାବିଚିତ୍ର ପ୍ରକ୍ରିୟା ସାହାଯ୍ୟରେ ଶେଷରେ ଜୀବନ୍ତ ଉପାଦାନ ହୋଇ ଯାଉଛନ୍ତି । ଆଉ ଗୋଟାଏ 'ଧ୍ୱଂସ ତନ୍ତ୍ର'ର କାହାଣୀ ମଧ୍ୟ ପୋଖରୀଟା ଆମକୁ କହୁଛି । ସେ କାହାଣୀଟି ହେଲା ଭିନ୍ନ ଭିନ୍ନ ପୋକ ବା ଉଦ୍ଭିଦଙ୍କ ଭିତରୁ ଯେତେକ ମାଛଙ୍କ ପେଟକୁ ନଗଲେ ସେଗୁଡ଼ିକ ମରିଯାଉଛନ୍ତି । ମରିଗଲା ପରେ ପୋଖରୀ ତଳେ ପଡ଼ି ରହୁଛନ୍ତି । କେତେକ ପ୍ରକାର ପୋକଙ୍କର କାମ ହେଲା ସେଗୁଡ଼ିକୁ ଭାଙ୍ଗି, ଖେଳେଇ ଯେଉଁ ମୂଳ ଉପାଦାନରୁ ଶେଷରେ ସେଗୁଡ଼ିକ ତିଆରି ହୋଇଛନ୍ତି ପୁଣି ସେହି ଉପାଦାନରେ ସେମାନଙ୍କୁ ପରିଣତ କରିବା । ଏହି ବିଚିତ୍ର କାର୍ଯ୍ୟ ଅନବରତ ଚାଲିଛି । ଲୁହା,

କାଲ୍‌ସିଅମ୍, ଅମ୍ଳଜାନ ଓ ଅଙ୍ଗାରକାମ୍ଳ ପ୍ରଭୃତି ବାଷ୍ପ ଭଳି ମୂଳ ଉପାଦାନରୁ ଜଟିଳ ଜୀବନ୍ତ ପଦାର୍ଥର ସୃଷ୍ଟି ଓ ଜଟିଳ ଜୀବନ୍ତ ପଦାର୍ଥରୁ ପୁଣି ମୂଳ ଉପାଦାନ ସୃଷ୍ଟି ।

ଆମର କାମ ହେଲା ଏହି ଚକ୍ର ଯେଉଁଠି ଅଟକିବ ସେଇଠି ତାକୁ ଟିକିଏ ଘୁରାଇ ଦେବା ଓ ଏହି ଘୁରାଇ ଦେବା ଫଳରେ ଶେଷରେ ଯେଉଁ ମାଛ ସୃଷ୍ଟି ହେଉଛି ତାକୁ ଆଣି ଆମର ଖାଦ୍ୟରୂପେ ବ୍ୟବହାର କରିବା ।

## ମାଛ ପୋଖରୀର ପାଣି

ଆମ ପୋଖରୀରୁ ଯେତେ ପରିମାଣରେ ମାଛ ପାଉଛେ ବିଜ୍ଞାନସମ୍ମତ ପ୍ରଣାଳୀରେ ଚାଷ କଲେ ତା'ର ବହୁଗୁଣ ବେଶି ପାଇବା । ଆମ ଦେଶର ବିଭିନ୍ନ ଅଞ୍ଚଳର ପାଣିକୁ ପରୀକ୍ଷା କରି କେଉଁ ପାଣିରେ ଅମ୍ଳ ବା ଏସିଡ୍ ଅଂଶ କେତେ ବା କ୍ଷାର ଅଂଶ କେତେ ବା ଅନ୍ୟ ଗୁଣଦୃଷ୍ଟିରୁ ତା'ର ଶ୍ରେଣୀ ବିଭାଗ କରାଯାଇ ପାରିନାହିଁ, ତେଣୁ ମାଛ ପାଳିବାପାଇଁ କେଉଁ ପାଣି କିଭଳି ଉପଯୁକ୍ତ ସେ ବିଷୟରେ ଆମର ଜ୍ଞାନ ଖୁବ୍ କମ୍ । ତେବେ ମାନ୍ଦ୍ରାଜରେ ସେ ଦିଗରେ କିଛି କିଛି ଉଦ୍ୟମ କରି ଯେଉଁ ଜ୍ଞାନ ହାସଲ କରା ଯାଇଛି, ସେଥିରୁ ନିଶ୍ଚୟ ଉପକାର ପାଇବା ।

ସେମାନେ ପାଣିକୁ ପାଞ୍ଚଭାଗରେ ଭାଗ କରିଛନ୍ତି :—

୧ । ପାଣିରେ ନେଳିଆସିଆ ବା ଶାଗୁଆ କ୍ଷୁଦ୍ର କ୍ଷୁଦ୍ର ଉଦ୍ଭିଦ ଇତ୍ୟାଦି ( ଆଲ୍‌ଗାଇ ) ଯଥେଷ୍ଟ ଅଛନ୍ତି । ପାଣିର ରଙ୍ଗ ଟିକିଏ ଶାଗୁଆ । ପାଣି ଦରକାର ମୁତାବକ କ୍ଷାରଯୁକ୍ତ ପି. ଏଚ୍.—୮ । ପୋଖରୀ ତଳେ କଳା ପଙ୍କ ଓ ପଚା ଉଦ୍ଭିଜ ଖାଦ୍ୟ ଯଥେଷ୍ଟ । ଏହିଭଳି ଏକରକମ ପୋଖରୀଟିରୁ ପଚାଶ ମହଣ ମାଛ ମିଳିବ ।

୨ । ପୋଖରୀରେ ଯଥେଷ୍ଟ ଉଦ୍ଭିଜ ଖାଦ୍ୟ, 'ଅଳ୍ପ ଅଳ୍ପ କଇଁ ପ୍ରଭୃତି ଗଛ, ଅଛି । ପାଣିର କୌଣସି ରଙ୍ଗ ନାହିଁ । ପାଣି ମାଛ ବଢ଼ିବାପାଇଁ ଦରକାର ମୁତାବକ କ୍ଷାର ଆଡ଼କୁ ଢଳିଛି (ପି. ଏଚ. ୭·୫ରୁ ୮·୫) । ପୋଖରୀର ତଳଟାରେ କଳାପଙ୍କ ଓ ଓ ପଚା ଉଦ୍ଭିଦ ଖାଦ୍ୟ ଯଥେଷ୍ଟ । ଏକରକଆ ପୋଖରୀରୁ ବାର ତେର ମହଣ ମାଛ ମିଳିବ ।

୩ । ଯଥେଷ୍ଟ କ୍ଷୁଦ୍ର କ୍ଷୁଦ୍ର ଭସାପୋକ ଓ ଅଳ୍ପ ଅଳ୍ପ ଉଦ୍ଭିଜ ଖାଦ୍ୟ । ପାଣିର ରଙ୍ଗ ଟିକିଏ ମାଟିଆ । ପାଣି କ୍ଷାର ଆଡ଼କୁ ନଢ଼ଳି ଅମ୍ଳଗୁଣ ମୁହାଁ ହୋଇଛି (ପି. ଏଚ. ୭), ପୂର୍ବ ଏକ ଓ ଦୁଇ ନମ୍ବର ପୋଖରୀର ତଳଟା ଯେମିତି ଏହାର ମଧ୍ୟ ସେମିତି । ସେଡ଼କ ଏକରକଆ ପୋଖରୀଟିରୁ ମୋଟେ ଛ' ସାତ ମହଣ ମାଛ ପାଇବା ।

୪ । ନଈଢିପେ ମଝିରେ କିଛି ମାଛଖାଦ୍ୟ ଜନ୍ମିଯାଏ ସିନା—ବର୍ଷ ତମାମ ଅଭାବ ଥାଏ । ପାଣି ବେଶ୍ ସଫା—ଅମ୍ଳଗୁଣ ବେଶି । (ପି. ଏଚ. ୬·୫ ରୁ ୭)—ଟିକିଏ କେବେବେଳେ କ୍ଷାର ଆଡ଼କୁ ଢଳିଯାଏ । ପୋଖରୀ ତଳେ କଳାପଙ୍କ ନ ଥାଇ ମାଟିଆ ରଙ୍ଗର କାଦୁଅ । ମାଣକଆ ବା ଏକରକଆ ପୋଖରୀଠାରୁ ମାଛ ମିଳିବ ଦୁଇ ମହଣରୁ ଟିକିଏ କମ୍ ।

୫ । ଭସା ସୂକ୍ଷ୍ମ ପୋକ ବା ଭସା ସୂକ୍ଷ୍ମ ଉଦ୍ଭିଦ ନାହାନ୍ତି କହିଲେ ଚଳେ । ପାଣି ବେଶ୍ ସଫା । ପୋଖରୀ ତଳେ କଳାପଙ୍କ ଓ ମାଛ ଖାଦ୍ୟ ସେଭଳି କିଛି ନାହିଁ । ପାଣି ଅମ୍ଳଗୁଣ ବିଶିଷ୍ଟ । ମାଛ ଆଦାୟ ହେବ ଖୁବ୍ ହେଲେ ଅଢ଼ାଇ ମହଣ ।

ପାଣିର ଏହି ଯେଉଁ ଶ୍ରେଣୀ ବିଭାଗ କରାଗଲା ତାକୁ ଆମେ ପୁରାପୁରି ଗ୍ରହଣ ନ କଲେ ମଧ୍ୟ କିଭଳି ପାଣିରେ ମାଛ କିଭଳି

ବଡ଼ନ୍ତି ତାର ଗୋଟାଏ ଧାରଣା କରିପାରିବା । ବଙ୍ଗଳା ରାଜ୍ୟରେ ସାଧାରଣତଃ ଗୋଟାଏ ପୋଖରୀରେ ଯାହା ଖାଦ୍ୟ ଅଛି କେବଳ ସେତିକ ଖାଇ ମାଛ ବଢ଼ୁଥିଲେ ଏକରକିଆ ପୋଖରୀଟାରୁ ୨୬୮ରୁ ୭୯୨ ପାଉଣ୍ଡ ପର୍ଯ୍ୟନ୍ତ ( ୧୩୬ ସେରରୁ ୩୯୬ ସେର ) ମାଛ ମିଳେ । କିନ୍ତୁ ପୋଖରୀରେ ପ୍ରକୃତି ଯେତିକ ଖାଦ୍ୟ ରଖିଛି ତା ସାଙ୍ଗକୁ ବାହାରୁ କିଛି କିଛି ଯୋଗାଇ ଦେଲେ ୪୮୪ ସେରରୁ ୧୦୬୫ ସେର ପର୍ଯ୍ୟନ୍ତ ମାଛ ଆମଦାନୀ କରାଯାଇ ପାରୁଛି । ସବୁକଥା ନିର୍ଭର କରୁଛି ପାଣି ଦେଖି ଉପଯୁକ୍ତ ଯାଆଁଳ ଛାଡ଼ିବା ଓ ସେମାନଙ୍କ ଯତ୍ନ ନେଇ ଖାଦ୍ୟ ଯୋଗାଇବା ଉପରେ ।

ମାଛ ଚାଷପାଇଁ ପାଣି ବାଛିଲା ବେଳେ ଆମେ ଅନ୍ତତଃ ଏତିକ ମନେ ରଖିଲେ ଯେ ଖୁବ ପରିଷ୍କାର ପାଣି ମାଛ ଚାଷପାଇଁ ଉପଯୁକ୍ତ ନୁହେଁ । କାରଣ ସେଥିରେ ମାଛଙ୍କ ପାଇଁ ଖାଦ୍ୟର ଅଭାବ । ସେଇଥିପାଇଁ ଯେଉଁ ପୋଖରୀର ପାଣି ମନୁଷ୍ୟର ପିଇବା ପାଇଁ ଉପଯୋଗୀ ସେ ପୋଖରୀ ମାଛଙ୍କ ପାଇଁ ଉପଯୁକ୍ତ ବାସସ୍ଥଳୀ ହୋଇ ନପାରେ ବୋଲି କହିଲେ ଚଳେ । ଯେଉଁ ପୋଖରୀର ପାଣି ଟିକଏ ସବୁଜ ରଙ୍ଗର—ସେଇ ପୋଖରୀ ମାଛ ଚାଷ ପାଇଁ ଭଲ । ପିଇବା, ଗାଧୋଇବା ବା ଅନ୍ୟ କୌଣସି ପ୍ରକାର ବ୍ୟବହାର ପାଇଁ ଅନୁପଯୁକ୍ତ ବୋଲି ବର୍ଜ୍ଜିତ କରାଯାଉଥିବା ପୋଖରୀଟିଏ ମାଛ ଚାଷୀର ଅମୂଲ୍ୟ ସମ୍ପଦ ବୋଲି ହୁଏତ ବିବେଚିତ ହୋଇପାରେ । ପାଣି ଗୋଳିଆ ହୋଇଗଲାର ଚବିଶ ଘଣ୍ଟା ଭିତରେ ଯଦି ସଫା ହୋଇ ନଗଲା ବା ତଳକୁ ଗୋଳି ବସି ନଗଲା ତେବେ ସେ ପୋଖରୀରେ କାଲସିଅମର ଅଭାବ ଅଛି ବୋଲି ବୁଝିବାକୁ ହେବ । ଚୂନ ପକାଇ ଦେଲେ ସେ ପୋଖରୀକୁ ଅତି ସହଜରେ ସଂଶୋଧନ କରି ଦେଇ ହେବ ।

# ମାଛଙ୍କ ଖାଦ୍ୟ ଓ ଖାଇବା ଅଭ୍ୟାସ

କେଉଁ, ଜାତିର ମାଛଙ୍କ ଖାଦ୍ୟ କ'ଣ ଓ ସେମାନେ କି ଢଙ୍ଗରେ ଖାଆନ୍ତି ସେ କଥା ଜାଣିଲେ ଏତିକି ସୁବିଧା ଯେ ଗୋଟିଏ ପୋଖରୀରେ ଯେତେକ ମାଛ ଖାଦ୍ୟ ଅଛି ସବୁଥିର ପୂର୍ଣ୍ଣ ସୁଯୋଗ ନେଇ ପାରିବା। ଭାକୁର ମାଛର ସ୍ୱଭାବ ହେଲା 'ଭସା-ଖାଦ୍ୟ' ଖାଇବ। ପାଣିର ଉପର ସ୍ତରରେ ବା ଟିକିଏ ତଳକୁ ମଧ୍ୟ ପାଣିରେ ଯେଉଁ ସୂକ୍ଷ୍ମ ଉଦ୍ଭିଦ ବା ପୋକ ଭାସୁଥାନ୍ତି ସେହିମାନଙ୍କୁ ସେ ଖାଏ ଓ ତା' ପାଟି ସେହି ଅନୁସାରେ ତିଆରି ହୋଇଛି। ରୋହି ବା ମିରିକାଳି ପୋଖରୀ ତଳେ ଚରନ୍ତି। ଗୋଟିଏ ପୋଖରୀରେ ଆମେ ଯଦି କେବଳ ଭାକୁର ଛାଡ଼ିବା ତେବେ ତା'ର ତଳେ ପଙ୍କରେ ଥିବା ଖାଦ୍ୟତକ ବୃଥା ଗଲା। ଭାକୁର ସେଠିକି ଯିବ ନାହିଁ କି ଖାଇବ ନାହିଁ। ତା'ର ଠିକ୍ ଓଲଟାଟା ମଧ୍ୟ ହୋଇପାରେ। କେବଳ ରୋହି ମିରିକାଳି ପାଳିଲେ ଭାକୁର ପାଇଁ ପୋଖରୀରେ ଥିବା ଉପଯୁକ୍ତ ଖାଦ୍ୟ ବୃଥା ଗଲା। ଏକ ପୋଖରୀରେ ଭାକୁର, ରୋହି, ମିରିକାଳି ଥିଲେ କେହି କାହା ସହିତ କଳି ନକରି ବେଶ ଚଳିବେ ଓ ବଢ଼ିବେ—ଜଣଙ୍କର ଚରାଭୂଇଁ ଅନ୍ୟର ଚରାଭୂଇଁଠୁ ଭିନ୍ନ। ରୋହି ମିରିକାଳିଙ୍କ ପେଟ ଚିରି ଦେଖିଲେ ଅନ୍ତ ଭିତରୁ ପଙ୍କ, ପଚା ଉଦ୍ଭିଦ ବାହାରିବ—ଭାକୁର ଅନ୍ତ ନିର୍ମଳ, ସେଥିରେ ପଙ୍କ ପଚା କିଛି ନାହିଁ।

ବାଲିଆ ଭଳି 'ମାଛଖିଆ ମାଛ'ଙ୍କ ପାଟିରେ ଦାନ୍ତ ଅଛି—ଭାକୁର ପାଟିରେ ସେଭଳି ଦାନ୍ତ ନାହିଁ। ବାଲିଆ ପାଟିର ଦାନ୍ତ ଅନ୍ୟମାନଙ୍କୁ ଚୋବାଇବା ପାଇଁ ତିଆରି ହୋଇନାହିଁ—ଶୀକାରଟା

ପାଟି ଭିତରେ ପହଞ୍ଚିଲେ ଯେମିତି ଖସି ପଳାଇ ଯାଇ ପାରିବ ନାହିଁ, ସେଇଥିପାଇଁ ତାକୁ ଏଭଳି ଦାନ୍ତ ଦିଆ ଯାଇଛି । 'ଭାକୁର'ତ ଅନ୍ୟ ମାଛ ଧରି ଖାଇବ ନାହିଁ—ତାକୁ କାହିଁକି ଅବା ଦାନ୍ତ ଦିଆ ଯାଆନ୍ତା ? ବାଳିଆ ଓ ଭାକୁର ପାଟିର ଆକାରରେ ମଧ୍ୟ ତଫାତ୍ ଅଛି । ବାଳିଆର କେତେ ବଡ଼ ପାଟି—କିନ୍ତୁ ଭାକୁରର ମୁଣ୍ଡ ତୁଳନାରେ ବଡ଼ ପାଟିଟାଏ ନାହିଁ । ଭାକୁର ବେଶ ବଡ଼ ଆକାରର କୌଣସି ଖାଦ୍ୟ ଖାଏ ନାହିଁ ବୋଲି ତାକୁ ଗୋଟାଏ ବଡ଼ ପାଟି ଦିଆ ଯାଇନାହିଁ ।

---

## ମାଛ ଚାଷର ଅର୍ଥ ଜଳ ଉଦ୍ଭିଦର ଚାଷ

ମାଛର ଖାଇବାର ଢଙ୍ଗ, ଖାଦ୍ୟ ଓ ମାଛ ଉପଯୋଗୀ ପାଣି ବିଷୟରେ ଅନେକ କଥା ଜାଣିଲା ପରେ ଆମେ ମୋଟ ଉପରେ ଗୋଟିଏ କଥା ଭଲ ଭାବରେ ଜାଣିଗଲୁ । କଥାଟି ହେଉଛି ପାଣିରେ ଯଥେଷ୍ଟ ପରିମାଣରେ ଉଦ୍ଭିଦ ବା ଗଛ (ଭସାଗଛ ଓ ପାଣିର ତଳେ ଚେର ମାରି ରହିଥିବା ଛୋଟ ଛୋଟ ଗଛ ) ଜନ୍ମିଲେ ସେଗୁଡ଼ିକୁ ନାନା ପ୍ରକାରର ପୋକ, ପାଣି ମାଛି, ଚିଙ୍ଗୁଡ଼ି, ଶାମୁକା ଇତ୍ୟାଦିଙ୍କ ଛୁଆ, 'ଭସାପୋକ' (ଜୁ ପ୍ଲାଙ୍କଟନ୍) ଖାଇ ବଢ଼ିବେ । ଏହିମାନେ ଶେଷରେ ମାଛ ପେଟକୁ ଯିବେ । ମାଛକୁ ବଢ଼େଇବାକୁ ହେଲେ ଯେ କୌଣସି ଉପାୟରେ ହେଉ ପାଣି ଗଛ ବା ଜଳଜ ଉଦ୍ଭିଦଙ୍କ ସଂଖ୍ୟା ବଢ଼ାଇବାକୁ ପଡ଼ିବ । ଶେଷକୁ ଏହି କଥା କହିଲେ ଚଳିବ ଓ କିଛି ଭୁଲ ହେବ ନାହିଁ ଯେ 'ମାଛ ଚାଷ' ର

ଅର୍ଥ 'ପାଣି ଭିତର ଚାଷ' । ଜଳଜ ଉଦ୍ଭିଦ କିପରି ଚାଷ କରାଯିବ ସେ'ଟା ହେଉଛି ପ୍ରଧାନ କଥା ।

ଭୂଇଁ ଉପରେ ଗଛ ଚାଷ କରିବା ପାଇଁ ଯେଉଁ ସବୁ ପଦାର୍ଥ ଦରକାର ପାଣି ଭିତରେ ଗଛଚାଷ କରିବା ପାଇଁ ମଧ୍ୟ ସେହି ସବୁ ପଦାର୍ଥ ଲୋଡ଼ା—ସୂର୍ଯ୍ୟକିରଣ, ଅଙ୍ଗାର କାମ୍ଳବାଷ୍ପ (କାର୍ବନ ଡାଇ ଅକ୍‌ସାଇଡ଼)ପାଣି,ନାଇଟ୍ରୋଜେନ,(ଯବକ୍ଷାର ଜାନ) ଫସ୍‌ଫରସ ଓ ପଟାସ ଇତ୍ୟାଦି ।

ପୋଖରୀର ପୂର୍ବ ଓ ଦକ୍ଷିଣପଟ ହୁଡ଼ାରେ ବଡ଼ ବଡ଼ ଗଛ ନ ଲଗାଇଲେ ବା ଥିଲେ କାଟି ସଫା କରିଦେଲେ ସୂର୍ଯ୍ୟକିରଣ ପାଇବାରେ କିଛି ଅସୁବିଧା ହୁଏ ନାହିଁ । ଆମ ଭୂଇଁ ଉପରେ ଥିବା ଗଛ ପବନରୁ ଅଙ୍ଗାରକାମ୍ଳ ବାଷ୍ପକୁ ନେଇ ନିଜ ପତ୍ରରେ ତାକୁ ସୂର୍ଯ୍ୟ କିରଣ ଇତ୍ୟାଦି ସାହାଯ୍ୟରେ ରାନ୍ଧି ନିଜ ଦେହରେ ଫଳ, ମୂଳ ବା ରସ ଆକାରରେ ସାଇତି ରଖି ଦେଉଥିବାରୁ ଜୀବମାନେ ଖାଇବାକୁ ପାଇ ପାଉଛନ୍ତି । ଜୀବକୁ ଖାଦ୍ୟ ଯୋଗାଇବା ଦାୟିତ୍ୱ ଗଛ ଯଦି ନେବ ତାକୁ ଯଥେଷ୍ଟ ଅଙ୍ଗାରକାମ୍ଳ ବାଷ୍ପ ମିଳିବା ଦରକାର । ପାଣିରେ ସାଧାରଣ ଭାବରେ ଯେତିକି ଅଙ୍ଗାରକାମ୍ଳ ବାଷ୍ପ ଅଛି ସେତିକି ଜଳ-ଉଦ୍ଭିଦଙ୍କ କାମରେ ଆସିବା ପାଇଁ ଯଥେଷ୍ଟ । ଅଭାବ ପଡ଼ୁଯାଏ ନାଇଟ୍ରୋଜେନ, ଫସ୍‌ଫରସ ଓ ପଟାସ ଇତ୍ୟାଦି ରସାୟନିକ ଦ୍ରବ୍ୟଗୁଡ଼ିକର । ଏହିସବୁ ରସାୟନିକ ଦ୍ରବ୍ୟ ପୂରଣର ଏକମାତ୍ର ଉପାୟ ହେଉଛି ପୋଖରୀରେ ନିୟମିତ ଭାବରେ ସାର ପ୍ରୟୋଗ କରିବା ।

## ଜଟିଳ ସାରକୁ ସରଳ କର

ଚାଷ ଜମିରେ ଆମେ ଗଛ ଖାଇବା ପାଇଁ ଯେଉଁ ଖତ ବା ପିଡ଼ିଆ ଦେଉ ତାକୁ ଗଛ ସେହି ଅବସ୍ଥାରେ ଖାଇ ପାରେ

ନାହିଁ—କାରଣ ତାହା ବଡ଼ ଜଟିଳ ଅବସ୍ଥାରେ ଥାଏ । ଆମ ପେଟକୁ ଖାଦ୍ୟ ଗଲା ପରେ ନାନା କ୍ରିୟା ଫଳରେ ତାହା ସରଳ ରୂପ ଧରି ଗ୍ଲୁକୋଷ ହେଲା ପରେ ଯାଇ ଅନ୍ତ ଦେହକୁ ଆସିଥିବା ସୂକ୍ଷ୍ମ ସୂକ୍ଷ୍ମ ରକ୍ତ ନଳୀ ତାକୁ ଶୋଷି ନେଇ ଆମ ରକ୍ତ ସ୍ରୋତରେ ମିଶାଇ ଆମକୁ ପୁଷ୍ଟ କରୁଛନ୍ତି । ସେହିପରି ମାଟିରେ ପିଡ଼ିଆ, ଖତ ଇତ୍ୟାଦି ଦେଲାବେଳେ ତାହା ଜଟିଳ ଅବସ୍ଥାରେ ଥାଏ । ମାଟି ଭିତରେ ନାନାପ୍ରକାର ରାସାୟନିକ କ୍ରିୟା ଦ୍ୱାରା ତାହା ସରଳ ରୂପ ଧରିଲେ ଯାଇ ଉଦ୍ଭିଦମାନେ ତାକୁ 'ଖାଇ' ପାରନ୍ତି । ଉପରେ ମାଟି ଦେହରେ ଏହି ଯେଉଁ 'ଜଟିଳ ସାରକୁ ସରଳ ସାରରେ ପରିଣତ କରିବା' କାମଟା ହୁଏ ପୋଖରୀରେ ପୋଖରୀ ତଳ ପଙ୍କ ବା ମାଟିରେ ସେହି କାମଟା ହୁଏ । ତା' ହେଲା ପରେ ଯାଇ ସେ ସାର ପିଡ଼ିଆ 'ଜଳଜ ଉଦ୍ଭିଦ'ଙ୍କ ଖାଦ୍ୟରେ ପରିଣତ ହୁଏ ।

ତା'ହେଲେ ଏକଥା ବୁଝିବାରେ ଆଉ ବାକି ନାହିଁ ଯେ ପୋଖରୀରେ ଆମେ ଯେଉଁ ସାର ପକାଇବା ତାହା ପାଣିଗଛ-ମାନଙ୍କ ପକ୍ଷରେ ଗ୍ରହଣ ଯୋଗ୍ୟ ହେବକି ନାହିଁ ସେକଥା ନିର୍ଭର କରୁଛି ପୋଖରୀତଳ ପଙ୍କର ଅବସ୍ଥା ଉପରେ । ପୋଖରୀ ତଳ ମାଟିହିଁ ଜଟିଳ ସାର ବା ଅନ୍ୟ ପଦାର୍ଥକୁ ସରଳ କରିପାରିବ । ସେହି ମାଟି ଦେହରେ ଖତ ପିଡ଼ିଆ ପ୍ରଭୃତି ସାର ପଦାର୍ଥ ବସିଯାଉଛି ଓ ଛୋଟବଡ଼ ଜଳଜୀବ ମରିଗଲା ପରେ ସେମାନଙ୍କ ମୃତ ଦେହ ମଧ୍ୟ ମିଶିଯାଉଛି । ଏ ସମସ୍ତଙ୍କଠୁଁ ଗଛ ଖାଇଲା ଭଳି ସରଳ ଉପାଦାନ ସଂଗ୍ରହ କରି ପୋଖରୀତଳ ମାଟି ନିଜ ଦେହରେ ସାଇତି ରଖେ ଓ ଧୀରେ ଧୀରେ ପାଣି ଦେହକୁ ଛାଡ଼େ । ପାଣିରୁ ସେତକ ଖାଇ କ୍ଷୁଦ୍ର କ୍ଷୁଦ୍ର 'ଭାସମାନ' ଓ ଅନ୍ୟାନ୍ୟ ଜଳ ଉଦ୍ଭିଦ ବଢ଼ନ୍ତି ।

କିନ୍ତୁ ଦେଖିବାର କଥା ଯେଉଁ ପୋଖରୀରେ ମାଛ ଛାଡ଼ିବାକୁ ଯାଉଛନ୍ତି ସେ ପୋଖରୀ ତଳର ମାଟିର ଏହି ଗୁରୁତ୍ୱପୂର୍ଣ୍ଣ କାମଟି କରିବାର ଶକ୍ତି ଅଛି କି ନାହିଁ । ସେ ଶକ୍ତି ଯଦି ନଥାଏ ତେବେ ଯେତେ ସାର ଦେଲେ ମଧ୍ୟ କୌଣସି ଲାଭ ନାହିଁ । ପେଟର ହଜମ କରିବାର ଶକ୍ତି ନ ଥିଲେ ଗୁଣ୍ଡାଏ ଖାଇ ଯେଉଁଳି ଲାଭ ନାହିଁ 'ସାର ପିଣ୍ଡୁଆକୁ ହଜମ କରିବା'ର ଶକ୍ତି ପୋଖରୀ ତଳ ମାଟିରେ ନ ଥିଲେ ଗୁଣ୍ଡାଏ ସାର ପିଣ୍ଡୁଆ ଦେଇ କିଛି ଲାଭ ନାହିଁ ।

## 'ପୋଖରୀ ତଳ' ତିନି ପ୍ରକାରର

ତଳର ମାଟିକୁ ବିଚାରକୁ ନେଇ ପୋଖରୀ ତଳଟାକୁ ତିନି ଶ୍ରେଣୀରେ ଭାଗ କରାଯାଇଛି—

୧ । ଉତ୍ପାଦକ ପୋଖରୀ—ଏହି ଶ୍ରେଣୀର ପୋଖରୀତଳର ମାଟି ବା ପଙ୍କ ନରମ ଓ ଦେଖିବାକୁ କଳା ।

୨ । ସାମାନ୍ୟ ଉତ୍ପାଦକ—ଯେଉଁ ପୋଖରୀ ତଳଟାରେ କେତିଗୁଣ୍ଡାଏ ବାଲି ଥାଏ ବା ପଥୁରିଆ ତାକୁ ଏହି ଶ୍ରେଣୀରେ ରଖାଯାଇଛି ।

୩ । ଅନୁତ୍ପାଦକ—ପୋଖରୀ ତଳେ ଯଦି ଗଛପତର ଇତ୍ୟାଦି ସଢ଼ିଯାଇ ସେମିତି ଜଳ ଜଳ ହୋଇ ରହୁଛି ତେବେ ଜାଣିବାକୁ ହେବ ଯେ ମାଛ ଖାଦ୍ୟ ଉତ୍ପାଦନ କରିବାର ଶକ୍ତି ତା'ର ନାହିଁ କହିଲେ ଚଳେ ।

ମଣିଷ ବୁଡ଼ିଯାଇ ପୋଖରୀ ତଳୁ ଗୁଡ଼ିପାଞ୍ଚ ଜାଗାରୁ ମାଟି ନେଇ ଆସି ଦେଖିଦେଲେ ଜଣା ପଡ଼ିଯିବ ପୋଖରୀଟା କେଉଁ ଶ୍ରେଣୀରେ ପଡ଼ୁଯାଉଛି । ସୁବିଧା ଥିଲେ ମାଟି ନେଇ ସରକାରଙ୍କ ମତ୍ସ୍ୟବିଭାଗର ଲାବୋରେଟାରୀ ବା ଅନ୍ୟ କୌଣସି ଲାବୋରେଟାରୀରେ ପରୀକ୍ଷା କରାଇନେବା ଭଲ । ପରୀକ୍ଷା କେବଳ

ନେଲେ ପୋଖରୀ ଜଳଟାକୁ ସଂସ୍କାର କରିବାରେ ସୁବିଧା ହେବ ଓ କେଉଁ ପରିମାଣରେ ସଂସ୍କାର ସାମଗ୍ରୀ ଦିଆଯିବ ତାହା ଠିକ୍ କରିବାକୁ ସୁବିଧା ହେବ ।

## ପୋଖରୀ ଜଳ ସଂସ୍କାର ବିଧି

ଯେଉଁ ପୋଖରୀର 'ମାଛ ଖାଦ୍ୟ' ଉତ୍ପାଦନର ଶକ୍ତି ନାହିଁ ସେ ପୋଖରୀରେ ଜଳଟାକୁ ସଂସ୍କାର କରି ଦେଲେ ନିଶ୍ଚିତ ଭଲ ଫଳ ମିଳିବ । 'ସାମାନ୍ୟ ଉତ୍ପାଦକ' ଓ 'ଅନୁତ୍ପାଦକ' ପୋଖରୀ ଜଳର ସଂସ୍କାର କି ଉପାୟରେ କରାଯାଇ ପାରିବ ସେ ବିଷୟରେ ବଙ୍ଗସରକାରଙ୍କ ମତ୍ସ୍ୟ ବିଭାଗ କେତେକ ସୂଚନା ଦେଇଛନ୍ତି ।

ସେହି ସୂଚନା ଅନୁସାରେ "ସାମାନ୍ୟ ଉତ୍ପାଦକ" ପୋଖରୀର ସଂସ୍କାର ଏହି ଉପାୟରେ କରାଯାଇପାରେ—

ଏହି ଶ୍ରେଣୀର ପୋଖରୀଗୁଡ଼ିକର ତଳେ ବାଲି ଓ ପଥର ବହୁ ପରିମାଣରେ ଥିବାରୁ ପୋଖରୀରେ ସାର ଦେଲେ ତାହା ଭଲରୂପେ 'ପଚେ' ନାହିଁ ଅର୍ଥାତ୍ ଗଛ ଖାଦ୍ୟ ଉପଯୋଗୀ ହୁଏ ନାହିଁ । ଫଳରେ ଉଦ୍ଭିଦ ବୃଦ୍ଧିରେ ବାଧା ଘଟେ । ଜଳଟା ସଂସ୍କାର ନକରି ସାର ଦେଇଦେଲେ କୌଣସି ଉପକାର ହୁଏ ନାହିଁ ।

ଯଦି ସୁବିଧାରେ ମିଳିଯାଏ କର୍ଦ୍ଦମ ମାଟି ଭଲ । କର୍ଦ୍ଦମାରୁ ପାଣି ସରସର ମାଟି ନେଲେ ଚଳିବ ନାହିଁ । ଉପରେ କଡ଼ା ହୋଇ ପଡ଼ି ଯେଉଁଥିରୁ ପାଣି ନିଗିଡ଼ି ଯାଇଥାଏ ସେହି ମାଟି ଆମର ଏହି କାମ ପାଇଁ ବେଶ୍ ଉପଯୁକ୍ତ । କମ୍ବା ଭଲ "ଉତ୍ପାଦକ ପୋଖରୀ" ତଳେ ଗୁଡ଼ାଏ କଳା ପଙ୍କ ବନ୍ଧ ବସି ଯାଇଥିବାରୁ

ସେଥିରୁ କିଛି କିଛି କାଢ଼ି ଯେତେକ ବାହାରେ ପକାଇ ଦିଆ ଯାଇଥାଏ, ସେଥିରୁ କିଛି ପାଇଗଲେ ଭଲ । ଏଣୁ ନର୍ଦ୍ଦମା ମାଟି ବା କଳା ପଙ୍କ ନେଇ "ସାମାନ୍ୟ ଉତ୍ପାଦକ ପୋଖରୀ"ରେ ଖେଳେଇ ବିଛାଇ ଦିଆଯାଇପାରେ । ପୋଖରୀ ଦେଖି—ଅର୍ଥାତ୍ ତଳରେ କେତେ ପରିମାଣରେ ବାଲି ବା ପଥୁରିଆ ମାଟି ଅଛି ତାକୁ ବିଚାର କରି ତିନରୁ ନଅ ଇଞ୍ଚ ପର୍ଯ୍ୟନ୍ତ ବାହାର ମାଟି ପକାଇବାକୁ ପଡ଼ିବ । ବାହାର ମାଟି ପକାଇ ସାରି ପ୍ରାୟ ତିନିମାସ ଛାଡ଼ିଦେଲା ପରେ ପୋଖରୀରେ ସାର ଦେଇ ମାଛ ଚାଷ କରିଲେ ବେଶ ଭଲ ଫଳ ମିଳେ ।

କିନ୍ତୁ ଯେଉଁଠି ଏ ସୁବିଧା ନାହିଁ ସେଠି ଗୁହାଳରୁ ଗୋବର ଓ ଅନ୍ୟ ଅଳିଆ ଦେଇ ପୋଖରୀରେ ୬ମାସ ପକାଇଲେ ପୋଖରୀ ତଳଟା ଆସ୍ତେ ଆସ୍ତେ ସଂସ୍କାର ହୋଇଯାଏ । ଏହି ଦୁଇ ପ୍ରକାର ସଂସ୍କାର ବିଧିରୁ ଯେଉଁଟି ହେଲେ ଚାଲୁଥିଲାବେଳେ ପୋଖରୀରେ ମାଛ ରହି ନ ଥିବା ଉଚିତ ।

ସଂସ୍କାର ପୂର୍ବରୁ ପୋଖରୀର ଅବସ୍ଥା କିଭଳି ଥିଲା ଓ ପରେ କିଭଳି ରହିଲା ସେକଥା ଭଲ ଭାବରେ ଜାଣିବାକୁ ଇଚ୍ଛା ଥିଲେ ପାଣି ଓ ମାଟିରୁ କିଛି ନେଇ ରାସାୟନିକ ପରୀକ୍ଷା କରାଇ ନେବାକୁ ପଡ଼ିବ । ତେବେ ଯାଇ ଜଣା ପଡ଼ିବ ପୋଖରୀର ଠିକ୍ କେତେଦୂର ଉନ୍ନତି ହୋଇଛି । ପରୀକ୍ଷାର ସୁବିଧା ନଥିଲେ ପାଣିର ଅବସ୍ଥା ଲକ୍ଷ୍ୟ କଲେ ମଧ୍ୟ ସଂସ୍କାରର ଉପକାରିତା ଜାଣିହେବ ।

## ଅନୁତ୍ପାଦକ ପୋଖରୀ

ଏହି ଶ୍ରେଣୀର ପୋଖରୀ ତଳେ ତ ଅପଚା ବା ଆଂଶିକ ପଚା ପତ୍ର, ଡାଳ ପ୍ରଭୃତି ବହୁ ପରିମାଣରେ ଜମା ହୋଇ ରହିଥାଏ ଓ ଜଳଜଳ ଦେଖା ଯାଉଥାଏ । ନ ପଚା ଏଭଳି ଜମା

ହୋଇ ରହିବାର ଏକମାତ୍ର କାରଣ ହେଉଛି ପୋଖରୀ ତଳଙ୍କୁ ପତ୍ର ପଚାଇ ଦେବାର କ୍ଷମତା ଏକ ପ୍ରକାର ନାହିଁ ବା ଯଥେଷ୍ଟ କମ୍ ଅଛି । ଏଭଳି କ୍ଷେତ୍ରରେ ବରାବର ଦେଖାଯାଉଛି ଯେ ପୋଖରୀ ପଙ୍କରେ ଅମ୍ଳଗୁଣ ଖୁବ୍ ବେଶୀ । ପଙ୍କଟା ଅମ୍ଳ ଆଡ଼କୁ ଏତେ ଢଳିଥିବାରୁ ସୂକ୍ଷ୍ମଜୀବାଣୁମାନଙ୍କ ଦ୍ୱାରା ଏହି "ପଚନକ୍ରିୟା" ହୋଇ ପାରୁନାହିଁ । ('ଲିଟମସ୍' କାଗଜରେ ପଙ୍କ ପରୀକ୍ଷା କରିଦେଲେ ଅମ୍ଳତ୍ୱଟା ଜାଣି ହୋଇଯିବ) ଚୂନ ସାହାଯ୍ୟରେ ପୋଖରୀ ପଙ୍କର ଅମ୍ଳ ଗୁଣ ନାଶ କରି କ୍ଷାରଗୁଣ ଆଣିହେବ । ମାଛ ବଢ଼ିବା ପାଇଁ ପୋଖରୀ ପାଣି ଓ ପଙ୍କ କ୍ଷାର ଆଡ଼କୁ ଢଳିଥିବା ନିତାନ୍ତ ଆବଶ୍ୟକ ।

ତେଣିକି ପ୍ରଶ୍ନ ଉଠିବ କେତେ ପରିମାଣରେ ପଥର-ଚୂନ ପକାଇ ପୋଖରୀ ତଳର ସଂସ୍କାର କରାହେବ । ଲିଟମସ୍ କାଗଜ ସାହାଯ୍ୟରେ ସାଧାରଣ ଲୋକ ସିନା ଜାଣି ପାରିବ ପଙ୍କଟାର ଗୁଣ ଅମ୍ଳ କି କ୍ଷାର—କିନ୍ତୁ ସେ ପଙ୍କରେ କେତେ ପରିମାଣରେ ଅମ୍ଳତ୍ୱ ଅଛି ତାହା ଠିକ୍ ଭାବରେ ମାପିବାକୁ ହେଲେ ମତ୍ସ୍ୟ ବିଭାଗ ବା ଅନ୍ୟ କୌଣସି ଅନୁଷ୍ଠାନର ଲାବରେଟରୀ ବା ପରୀକ୍ଷାଗାରରେ ପରୀକ୍ଷା କରାଇ ନେବାକୁ ହେବ ।

ପଙ୍କର ଅମ୍ଳତ୍ୱର କମ୍ ବେଶି ଉପରେ ପଥର ଚୂନର ପରିମାଣ ନିର୍ଭର କରୁଥିବାରୁ ଅମ୍ଳତ୍ୱର ମାନ * ବା ଅନୁପାତ

---

* ପି. ଏଚ୍. ହେଲା ଅମ୍ଳତ୍ୱର ଗୋଟାଏ ମାନ । 'ପି: ଏଚ୍: ୭' ହେଲେ ଅମ୍ଳ ନୁହେଁ କି କ୍ଷାର ନୁହେଁ । ତେଣିକି ୭ରୁ ଯେତେ କମ୍ ମାପ ହେଲା ଅମ୍ଳତ୍ୱ ସେତିକି ବେଶି । ପାଣି ସେତିକି ଅମ୍ଳତ୍ୱ ଆଡ଼କୁ ଢଳିଛି । ୭ରୁ ବେଶି ମାପ ହେଲେ କ୍ଷାର ଗୁଣ ବେଶି ଅର୍ଥାତ୍ ପାଣି କ୍ଷାରତ୍ୱ ଆଡ଼କୁ ଢଳିଛି ।

ଅନୁସାରେ କେତେ ପଥର ଚୂନ ଗୋଟିଏ ଏକର ପୋଖରୀରେ ପକାଯିବ ତା'ର ଏକ ତାଲିକା ଦିଆଗଲା:—

| ଅମ୍ଳତ୍ୱ (ପିଃ ଏଚ୍) | ପ୍ରତି ଏକର ପୋଖରୀରେ ଚୂନର ପରିମାଣ |
|---|---|
| ୪ ରୁ କମ୍ ହେଲେ | ୪୦ ରୁ ୮୦ ମହଣ |
| ୪ ରୁ ୪.୫ | ୩୨ ରୁ ୬୪ ମହଣ |
| ୪.୫ ରୁ ୫ | ୨୪ ରୁ ୪୮ ମହଣ |
| ୫ ରୁ ୫.୫ | ୨୦ ରୁ ୩୨ ମହଣ |
| ୫.୫ ରୁ ୬ | ୧୦ ରୁ ୨୦ ମହଣ |
| ୬ ରୁ ୬.୫ | ୯ ରୁ ୧୦ ମହଣ |

## ଚୂନତକ କିଭଳି ଦେବ

ଯେଉଁଠି ପୋଖରୀରୁ ପାଣି କାଢି ବାହାର କରି ଦେବାର ବା ଅନ୍ୟ ଉପାୟରେ କାଢ଼ି ପକାଇବାର ସୁବିଧା ଥିବ ସେଠି ପାଣିତକ ବାହାର କରିଦେଲା ପରେ ପଙ୍କରେ ଆବଶ୍ୟକୀୟ ଚୂନ ଛିଞ୍ଚିଦେଇ ଯେତେଦୂର ସମ୍ଭବ ପଙ୍କ ଓ ଚୂନକୁ ଗୋଳାଇ ମିଶାଇ ଦେବ । ଅନ୍ତତଃ ପନ୍ଦର ଦିନ ପୋଖରୀଟିକୁ ଏହିଭଳି ଭାବରେ ଛାଡ଼ିଦେଲେ ତଳଟି ଆପଣାଛୁଏଁ ସଂଶୋଧିତ ହୋଇଯିବ । ତା'ପରେ ନଙ୍ଗଳ ପକାଇ ତଳଟାକୁ ଥରେ ଚଷିଦିଅ ଓ ପାଣି ଭର୍ତ୍ତି କରିଦିଅ । ପାଣି ଭର୍ତ୍ତିକରି ଆଠଦଶ ଦିନ ରଖିଦେଲା ପରେ ମାଛ ଛଡ଼ା ଯାଇପାରେ । ଏହି ଆଠଦଶ ଦିନ ଭିତରେ ଅନ୍ତତଃ ଦୁଇ ତିନଥର ପୋଖରୀରେ ଜାଲ ଟାଣି ପାଣିଟାକୁ ଘାଣ୍ଟିଦେବା ଉଚିତ ।

ପଥର ଚୂନ ବଦଳରେ ଯଦି ଅନ୍ୟ କୌଣସି ଚୂନ ଦେବାକୁ ପଡ଼େ, ଉପରେ ପଥର ଚୂନର ଯେଉଁ ପରିମାଣ ଦିଆଗଲା ତାହାର ଅଧା ଦେବାକୁ ହେବ ।

---

## ପୋଖରୀରେ ଖତ

ଧାନ ଚାଷୀ ପ୍ରଥମେ ଜମି ଠିକ୍ କଲାପରେ ବିଚାର କରେ କ୍ଷେତରେ କଭଳି ଭଲ ଖତ ଉପଯୁକ୍ତ ପରିମାଣରେ ପକାଇବ । ଖତ ନପକାଇ ଧାନ ବୁଣିଲେ ତା’ ପରିଶ୍ରମର ଫଳ କେବେ ହେଲେ ପାଇବ ନାହିଁ ।

ମାଛ ଚାଷୀ ପ୍ରଥମେ ତା’ର ପୋଖରୀଟିକୁ ଦରକାର ପଡ଼ିଲେ ସଂସ୍କାର କରି ସାରିଲା ପରେ ଦେଖିବା ଉଚିତ ସେଥିରେ ଦରକାର ମୁତାବକ ଖତ ଦିଆଗଲା କି ନାହିଁ । ଖତ ଦେଇଦେଲେ ପାଣିଗଛ ବା ଜଳଉଦ୍ଭିଦ ଭଲ ଭାବରେ ବଢ଼ିବ ଓ ତେଣିକି ମାଛଙ୍କୁ ଯଥେଷ୍ଟ ଖାଦ୍ୟ ମିଳିଯିବ ।

ଜମିରେ ସାର ବା ଖତ ଦିଆଯାଏ କାହିଁକି ? ଗଛଟି ବଢ଼ିବାକୁ ଓ ପୁଷ୍ଟ ହେବାକୁ ଯବକ୍ଷାରଜାନ (ନାଇଟ୍ରୋଜେନ୍), ଫସଫରସ, ପଟାସ ଓ ଚୂନ (କାଲସିଅମ୍) ପ୍ରଭୃତି ରସାୟନକ ଦ୍ରବ୍ୟ ଦରକାର । ଜମିରେ ଏ ସବୁ ପଦାର୍ଥରୁ ଯେତକ ଥାଏ ଗଛପାଇଁ ସେତକ ଅଣ୍ଟେନାହିଁ, ତେଣୁ ସେସବୁ ଉପାଦାନ ଯେଉଁଥିରେ ଥାଏ ସେହିଭଳି ପଦାର୍ଥ ଜମିରେ ମିଶାଇ ଦେଲେ ଗଛ ତା’ର ମନ ମୁତାବକ ଉପଯୁକ୍ତ ଖାଦ୍ୟ ପାଇଯାଏ ଓ ଭଲ ଭାବରେ ବଢ଼େ ଓ ପୁଷ୍ଟ ହୁଏ । ଏହି ସବୁ ଉପାଦାନରୁ ଗୋଟିଏ ବା ଏକାଧିକ ଯେଉଁ ପଦାର୍ଥରେ ଥାଏ ତାକୁହିଁ

ସାର ବା ଖତ ବୋଲି କୁହାଯାଏ । ଏହି ଉପାଦାନ-ଗୁଡ଼ିକରୁ ଏକାଧିକ ଯେଉଁ ପଦାର୍ଥରେ ଉପଯୁକ୍ତ ପରିମାଣରେ ଥାଏ ତାକୁହିଁ ଭଲ ଖତ ବୋଲି କହୁଥାନ୍ତି ।

ଦୁଇ ପ୍ରକାର ପଦାର୍ଥରୁ ଏହି ଉପାଦାନଗୁଡ଼ିକ ମିଳିଯାଏ, ଗୋଟିଏ ହେଲା 'ଜୈବିକ' (ଅର୍ଗାନିକ) ଅନ୍ୟଟି 'ରାସାୟନିକ' (ଇନ୍ ଅର୍ଗାନିକ) । ଗୋବର, ଗୁହାଳର ଗୋମୂତ୍ର ପ୍ରଭୃତି ଅନ୍ୟାନ୍ୟ ଅଳିଆ, ନର୍ଦ୍ଦମା ବା ନାଳ ମାଟି, ପିଡ଼ିଆ, ଅଳିଆ, ବଳକା ଜଳରେ ତିଆରି ହୋଇଥିବା କମ୍ପୋଷ୍ଟ, ହାଡ଼ଗୁଣ୍ଡ ଇତ୍ୟାଦି ଜୈବିକ ସାର, ଓ ଆମୋନିୟମ ସଲଫେଟ, ଆମୋନିୟମ ଫସ୍‌ଫେଟ୍, ଆମୋନିୟମ ନାଇଟ୍ରେଟ ଓ ସୁପର ଫସଫେଟ୍ ପ୍ରଭୃତି ହେଲା ରାସାୟନିକ ସାର ।

## ଜୈବିକ ସାରହିଁ ଦିଆଯିବ

ବହୁ ପରୀକ୍ଷା ଓ ଗବେଷଣା ପରେ ପଣ୍ଡିତମାନଙ୍କର ମତ ଯେ ପୋଖରୀରେ ଜୈବିକ ସାର ବା ଖତହିଁ ଦିଆଯିବା ଉଚିତ । ଏହି ଖତରେ ଉଦ୍ଭିଦ ପ୍ରାଣୀର ପ୍ରାୟ ସମସ୍ତ ଉପାଦାନ ଅଳ୍ପ ବହୁତେ ଥିବାରୁ ଏହାକୁ ଦେଲେ ପୋଖରୀର ସରସତା ରାସାୟନିକ ସାର ପ୍ରୟୋଗ ତୁଳନାରେ ଅଧିକ ବଜାୟ ରହେ । ଉପରେ ଯେଉଁ ସବୁ ଉପାଦାନ କଥା କୁହାଗଲା । ସେଥି ଭିତରୁ ରାସାୟନିକ ସାରରେ ଗୋଟିଏ ବା ଦୁଇଟି ମାତ୍ର ଥାଏ, କିନ୍ତୁ ଜୈବିକ ସାରରେ ବହୁତ ଉପାଦାନ ଏକାଠି ଥିବାରୁ ପୋଖରୀର ସରସତା ବଜାୟ ରହିବାରହିଁ କଥା । ଉପର ଲିଖିତ ଉପାଦାନ ବ୍ୟତୀତ ମାଙ୍ଗାନିଜ, ମ୍ୟାଗ୍ନେସିୟମ, ଲୁହା, ତମ୍ବା ଇତ୍ୟାଦି ମଧ୍ୟ ଗଛର ପୁଷ୍ଟି ଓ ବୃଦ୍ଧି ପାଇଁ

ଦରକାର । କିନ୍ତୁ ସେଗୁଡ଼ିକ ଏତେ ଅଳ୍ପ ପରିମାଣରେ ଦରକାର ଯେ ରାସାୟନିକ ପରୀକ୍ଷା କରି ସେଗୁଡ଼ିକର ମାତ୍ରା ସ୍ଥିର କରିବା ଅତି କଠିନ ବ୍ୟାପାର—ଅଥଚ ସେଥିଭିତରୁ କାହାର କାହାର ଅଭାବରେ ଗଛ ଭଲ ବଢ଼େ ନାହିଁ ବା ପୁଷ୍ଟ ହୁଏ ନାହିଁ । ରାସାୟନିକ ସାର ପୋଖରୀରେ ବ୍ୟବହାର କରିବା ପାଇଁ ଏହି ଜଟିଳ ପ୍ରଶ୍ନଟି ଗୋଟିଏ ବଡ଼ ଅନ୍ତରାୟ ମଧ୍ୟ । ଜୈବିକ ସାରରେ ଏ ସବୁ ଉପାଦାନ ପ୍ରାପ୍ତ ଥାଏ । ଏହି ସବୁ କଥା ବିଶେଷ ଭାବରେ ଆଲୋଚନା କରି ବଙ୍ଗଳାର ମତ୍ସ୍ୟ-ବିଭାଗର ସହକାରୀ ଅଧିକର୍ତ୍ତା ଡକ୍ଟର କାଳିଚରଣ ସାହା ଶେଷରେ ଲେଖିଛନ୍ତି—"ପୋଖରୀର ଉର୍ବରତା ବଜାୟ ରଖିବାକୁ ହିଁ ହେବ । କେବଳ ରାସାୟନିକ ସାର ବ୍ୟବହାର କରି ଏହା କଦାପି କରାଯାଇ ପାରିବ ନାହିଁ । ତେଣୁ ଜୈବିକ ସାର ଦେବାକୁ ହିଁ ହେବ—ନଚେତ କିଛି କାଳ ରାସାୟନିକ ସାରର ବ୍ୟବହାର ଫଳରେ ପୋଖରୀର ଉତ୍ପାଦନ ଶକ୍ତି କ୍ରମେ ହ୍ରାସ ପାଇ ଶେଷରେ ତା'ର ବନ୍ଧ୍ୟାତ୍ୱ ପ୍ରକାଶ ପାଇବ ।"

ଅନ୍ୟ କୌଣସି ପଣ୍ଡିତ ଏହାଙ୍କ ସହିତ ସମ୍ପୂର୍ଣ୍ଣ ଏକ ମତ ହୋଇ ପୋଖରୀ 'ବାଂଝ' ପାଲଟି ଯିବ ବୋଲି ଯଦି ନ କହିବେ ତେବେ ଏତିକି ନିଶ୍ଚୟ ମାନିବେ ଯେ ମାଛ ପୋଖରୀରେ ଜୈବିକ ସାର ପ୍ରୟୋଗହିଁ ନିରାପଦ ଓ ବେଶୀ ଉପକାରୀ ।

ଡକ୍ଟର ସାହା ଆହୁରି ମଧ୍ୟ ଲେଖିଛନ୍ତି—"ଗାଁ ଗହଳରେ ଜୈବିକ ସାର ବା ଖତ ତିଆରି କରିବାର ସାମଗ୍ରୀ ଅତି ସହଜରେ ଓ ବିନା ଖର୍ଚ୍ଚରେ ମିଳିଯାଏ । ଏ ଦେଶରେ

ପୋଖରୀରେ ରାସାୟନିକ ସାର ବ୍ୟବହାର ସମ୍ପର୍କରେ କୌଣସି ହେଲେ ଯୁକ୍ତି ନାହିଁ ।”

## ପୋଖରୀର ପ୍ରକାରଭେଦ ଓ ଖତ

ପ୍ରତ୍ୟେକ ପୋଖରୀର କିଛି ନା କିଛି ବିଶେଷତ୍ୱ ଅଛି । ଠିକ ଏକ ପ୍ରକାରର ଦୁଇଟି ପୋଖରୀ ପାଇବା ନିଶ୍ଚୟ କଷ୍ଟ । ତାହାର ଚତୁଃପଟର ଅବସ୍ଥା କିଭଳି, ସେଥିରେ ସାଧାରଣତଃ ମାଛ କିଭଳି ବଢ଼ନ୍ତି, ଜଳମାଟିର ଉର୍ବରତା କିପରି—ଇତ୍ୟାଦି କଥା ବିଚାରକୁ ଆଣି ସ୍ଥିର କରିବାକୁ ହେବ, କେଉଁ ପୋଖରୀରେ କି ଧରଣର ଖତ କେତେ ପରିମାଣରେ ଦେବାକୁ ହେବ—ସେ ଦିଗରେ ମାଛ ଚାଷ ବିଭାଗର ଲୋକେ ପରାମର୍ଶ ଦେଇ ପାରିବେ । ମାଟି, ପାଣି ପରୀକ୍ଷା ନ କରି ଖତର ପରିମାଣ ଠିକ କରିଦେବା ସମ୍ଭବ ନୁହେଁ ।

ଏଠି କେବଳ ଏତିକି ଦିଆଯାଉଛି କେଉଁ ଶ୍ରେଣୀର ପୋଖରୀରେ କି ପ୍ରକାରର ପଦାର୍ଥର ଖତ ଦିଆଯିବା ଉଚିତ:—

| ପୋଖରୀର ଅବସ୍ଥା | କି କି ପଦାର୍ଥର ଖତ ଦିଆଯିବ |
|---|---|
| ନୂଆ ଖୋଳା ଯାଇଥିବା ପୋଖରୀ | ୧ । ଗୁହାଳ ଓ ରୋଷାଇ ଘରର ଅଳିଆ, ଉତ୍ପାଦକ ପୋଖରୀ ତଳର ପଙ୍କ, ଗୋବର, ଚୂନ । |
| | ୨ । ନର୍ଦ୍ଦମା ମାଟି, ପିଡ଼ିଆ, ଦଳପୋଡ଼ା ପାଉଁଶ । |
| ଉତ୍ପାଦକ ପୋଖରୀ | ୧ । ଗୋବର, ପିଡ଼ିଆ, ଦଳପୋଡ଼ା ପାଉଁଶ । |
| | ୨ । ନର୍ଦ୍ଦମାର ପାଣି । |

| | |
|---|---|
| ସାମାନ୍ୟ ଉତ୍ପାଦକ ପୋଖରୀ ( ସଂସ୍କାର ପରେ ) | ୧ । ଗୁହାଳ ବା ଷ୍ଟେଡ଼ ଇଦରର ଅଳିଆ, ଉତ୍ପାଦକ ପୋଖରୀ ତଳର ପଙ୍କ, ଗୋବର, ଚୂନ, ପାଉଁଶ । |
| | ୨ । ନର୍ଦ୍ଦମା ମାଟି, ପିଡ଼ିଆ, ଦଳପୋଡ଼ା ପାଉଁଶ । |
| ଅନୁତ୍ପାଦକ ପୋଖରୀ ( ସଂସ୍କାର ପରେ ) | ୧ । ଗୋବର, ପିଡ଼ିଆ, ଦଳ-ପୋଡ଼ା ପାଉଁଶ, ଚୂନ । |
| | ୨ । ନର୍ଦ୍ଦମାର ମଇଳା ପାଣି । |

## ସାର ପ୍ରୟୋଗ ପ୍ରଣାଳୀ

କ ଉପାୟରେ ପୋଖରୀରେ ସାର ଦିଆଯିବ ସେ ବିଷୟରେ ଡକ୍ଟର ସାହା ଏହିଭଳି ପରାମର୍ଶ ଦେଇଛନ୍ତି—"ନୂଆ ହୋଇ ଖୋଳା ହୋଇଥିବା ପୋଖରୀ ତଳଟିକୁ ଲଙ୍ଗଳ ପକାଇ ଚଷିଦେଲେ ମାଟି ଖେଳେଇ ହୋଇଯିବ । ଖତ ତିଆରି ଉଦ୍ଦେଶ୍ୟରେ ରଖାଯାଇଥିବା ଜିନିଷଗୁଡ଼ିକ ଏକାଠି ମିଶାଇଦେଇ ଗୁଣ୍ଡଆଡ଼େ ସମାନ ଭାବରେ ପକାଇଦେବ । ତା'ପରେ ଆଉଥରେ ଲଙ୍ଗଳ ପକାଇ ଚଷି ଦେବା ଉଚିତ । ତିନିଚାରିଦିନ ପର୍ଯ୍ୟନ୍ତ ସେହି ପୋଖରୀ ତଳରେ ପାଣି ଛୁଇଁ ଦେଉଥିଲେ ଖତ ସାମଗ୍ରୀଗୁଡ଼ିକ ପଚିବା ପାଇଁ ସହଜ ହେବ । ପନ୍ଦର କୋଡ଼ିଏ ଦିନ ପରେ ଯେତେବେଳେ ଦେଖାଯିବ ଯେ, ଗୋବର, ପିଡ଼ିଆ, ଅଳିଆ ପ୍ରଭୃତି ମାଟିରେ ମିଶି ଖତ ପାଲଟିଲା ଭଳି ହୋଇ ମାଟିର ରଙ୍ଗ ବଦଳି ଆସିଲାଣି ସେତେବେଳେ ପୋଖରୀରେ ପାଣି ଭର୍ତ୍ତି କରି ଦିଆଯିବ ।"

ନୂଆ ପୋଖରୀରେ ସିନା ଏହି ଉପାୟରୁ ସାର ବା ଖତ ଦେଇ ହୁଏ । ଦେବ—କିନ୍ତୁ ଯେଉଁ ପୋଖରୀରେ ପାଣି ଅଛି—ବିଶେଷତଃ ଯେଉଁଥିରେ ମାଛ ଅଛନ୍ତି, ସେଥିରେ ଖତ ସାମଗ୍ରୀତକ ନେଇ ସିଧା ସଳଖ ମାଡ଼ିଦେବା ଆଦୌ ଉଚିତ ନୁହେଁ । ସେପରି କଲେ ଅନର୍ଥ ହିଁ ସାର । ସେଭଳି ପୋଖରୀରେ କିଭଳି ଉପାୟରେ ଖତ ଦିଆଯାଇ ପାରିବ, ତାହା ଅନ୍ୟ ଏକ ଅଧ୍ୟାୟରେ କୁହା ଯାଇଛି ।

---

# ମାଛ ପୋଖରୀ

ମାଛଙ୍କ ବଢ଼ିବା ପାଇଁ ଉପଯୁକ୍ତ ପୋଖରୀ କିଭଳି ହେବା ଉଚିତ ସେ ବିଷୟରେ ଅନ୍ୟ କେତୋଟି କଥା ମନେ ରଖିଲେ ଚଳେ ।

୧ । ସକାଳେ ସୂର୍ଯ୍ୟକିରଣ ପୋଖରୀରେ ନପଡ଼ିଲେ ମାଛ ଆଶାନୁରୂପ ବଢ଼ିବେ ନାହିଁ । ତେଣୁ ପୋଖରୀ ପୂର୍ବପଟ ହୁଡ଼ାରେ ଖଜୁରି ଅଟକାଇଲା ଭଳି ବଡ଼ ବଡ଼ ଗଛ ରହିବା ଉଚିତ ନୁହେଁ ।

୨ । ଚାରିପଟ ହୁଡ଼ାରେ ଗୁଳ୍ମାଏ ଗଛ ଥିଲେ ଖରାପ—କାରଣ ସବୁବେଳେ ଗୁଡ଼ାଏ ପତ୍ର ଇତ୍ୟାଦି ପଡ଼ି ପାଣି ଖରାପ ହେବ ଓ ମାଛ ମରିଯିବାର ଭୟ ଅଛି ।

୩ । ଅଳ୍ପ ଗଛ ଆଉ ପାଣିରେ ଟଳିଯାଇ ପଡ଼ୁଥିଲେ ଖରାଦିନେ ପାଣି ଥଣ୍ଡା ରହେ ଓ ମାଛଙ୍କୁ ବାଧେ ନାହିଁ ।

୪ । ଅତି ଗଭୀର ପୋଖରୀ ମାଛ ବଢ଼ିବା ପାଇଁ ଉପଯୁକ୍ତ ନୁହେଁ । ତା'ର ଓଲଟାଟା ମଧ୍ୟ ସତ—ଅତି ଅଳ୍ପ ଗଭୀର

ପୋଖରୀରେ ଖସି ତା ପରେ ମାଛଙ୍କର ମଡ଼କ ହେବାର ଆଶଙ୍କା ଥାଏ । ବର୍ଷାଦିନେ ଆଠଫୁଟରୁ ଦଶଫୁଟ ପାଣି ରହୁଥିଲେ ମାଛଚାଷ ପାଇଁ ସେହି ପୋଖରୀ ବେଶ୍ ଉପଯୋଗୀ ।

୫ । ପୋଖରୀ ତଳଟାରେ ଯଦି ଗୁଡ଼ାଏ ବାଲି ବା ପଥର ଥାଏ ତେବେ ସେଥିରେ ମାଛ ଭଲ ବଢ଼ିବେ ନାହିଁ । ସେଭଳି ପୋଖରୀ ତଳଟା ସଂସ୍କାର କରିଦେଲେ ଅବଶ୍ୟ ମାଛଚାଷ କରାଯାଇପାରେ ।

୬ । ଯେଉଁ ପୋଖରୀର ତଳଟାରେ କଳା ନରମ ପଙ୍କ ଥାଏ ସେଇଟାକୁ ମାଛବଢ଼ା ପୋଖରୀ ବୋଲି କୁହାଯାଏ ।

୭ । ପୋଖରୀ ତଳେ ଛ' ସାତ ଇଞ୍ଚ କଳାପଙ୍କ ରହିଥିଲେ ଭଲ । ସେହି ପଙ୍କକୁ ମଝିରେ ମଝିରେ ଘାଣ୍ଟି ଦେବା ଉଚିତ— ତା' ନହେଲେ ସେହି 'ବନ୍ଧ ପଙ୍କ'ରୁ ସମୟେ ସମୟେ ଦୂଷିତ ବାଷ୍ପ ଜନ୍ମି ମାଛଙ୍କର ଘୋର ଅନିଷ୍ଟ କରିପାରେ ।

୮ । ପୋଖରୀ ତଳେ ଯଦି ଗୁଡ଼ାଏ ଟର୍ଣ୍ଣପତ୍ର ରହି ପଚି ଯାଉନାହିଁ ବା ଅଳ୍ପ ଅଳ୍ପ ପଚୁଛି ତେବେ ଜାଣିବାକୁ ହେବ ଯେ ସେ ପୋଖରୀର ମାଛଙ୍କୁ ଖାଦ୍ୟ ଯୋଗାଇବା ଶକ୍ତି କମିଯାଉଛି । ଯେଉଁ ସୂକ୍ଷ୍ମ ଜୀବାଣୁମାନେ ଏହିପରି ପତରଗୁଡ଼ାକ ପଚାଇ ଦେଇ ମାଛ ଖାଦ୍ୟରେ ପରିଣତ କରନ୍ତି ସେହି ଜୀବାଣୁଙ୍କର ଅଭାବ ସେ ପୋଖରୀରେ ହୋଇଗଲାଣି । ଏଭଳି ପୋଖରୀରେ ମାଛ ଚାଷକଲେ ଖାଦ୍ୟ ଅଭାବରୁ ସେଗୁଡ଼ିକ ବଢ଼ିପାରିବେ ନାହିଁ । ତେଣୁ ଏଭଳି ପୋଖରୀରେ ମାଛ ଚାଷ କଲେ ତାକୁ ଶୋଧନ ବା ସଂସ୍କାର କରିନେବା ଦରକାର ।

୯ । ନୂଆ ହୋଇ ଖୋଳା ହୋଇଥିବା ପୋଖରୀରେ ସେହିବର୍ଷ ମାଛ ଚାଷ କଲେ ବିଶେଷ ଲାଭ ନହେଲେ ବସ୍ତୁତ

ହେବାର କାରଣ ନାହିଁ । କାରଣ ସେ ପୋଖରୀରେ ମାଛଗୁଡ଼ିକ ଯଥେଷ୍ଟ ଖାଦ୍ୟ ପାଆନ୍ତି ନାହିଁ ।

୧୦ । ପୋଖରୀ ତଳଟା ସମତଳ ନଥିଲେ ମାଛ ବଢ଼ିବାରେ କୌଣସି ଅସୁବିଧା ହୁଏ ନାହିଁ ସତ—କିନ୍ତୁ ଜାଲ ପକାଇଲାବେଳେ ଅସୁବିଧା ହୁଏ । ତଳେ ଜାଲ ନ ଲାଗିଲେ ମାଛ ଖସିଯିବେ ।

୧୧ । ତଳ ପଙ୍କରୁ ଯଦି ପଚା ଅଣ୍ଡା ଗନ୍ଧ ବାହାରିଲା ତେବେ ସେ ପୋଖରୀ ଦୂଷିତ ହୋଇଯାଇଛି ବୋଲି ଧରିନେବାକୁ ହେବ । ସେ ପୋଖରୀରୁ ପାଣି ବୋହିଦେଇ ପଙ୍କ ଉଦ୍ଧାର କରିଦେବା ବ୍ୟତୀତ ଅନ୍ୟ ଉପାୟ ନାହିଁ ।

୧୨ । କଲମ, କଇଁ ପ୍ରଭୃତି ପାଣିକୁ ଥଣ୍ଡାରଖି ଓ କଛି କଛି ମାଛ ଖାଦ୍ୟ ଯୋଗାଇ ମାଛ ଚାଷରେ ବେଶ୍ ସାହାଯ୍ୟ କରେ ସତ—କିନ୍ତୁ ମାତ୍ରା ବେଶି ହୋଇଗଲେ କ୍ଷତି କରେ ।

୧୩ । ପାଣି ଉପରେ ନାଲିଆ ବା ଖଇରିଆ ରଙ୍ଗର ସର ବେଳେବେଳେ ପଡ଼ିଯାଏ । ସେଗୁଡ଼ିକ ଅତି ଗ୍ରେଟ ଗ୍ରେଟ 'ଉଦ୍ଭିଦ' । ସେଗୁଡ଼ା ରହିଲେ ମାଛଙ୍କୁ ନାନା ପ୍ରକାର ରୋଗ ଧରେ । ଜାଲପକାଇ ବା ଅନ୍ୟ ଉପାୟରେ ପୋଖରୀ ତଳଟାକୁ ମାସକରେ ଥରେ ଲେଖା ଘାଣ୍ଟିଦେଲେ ଏଗୁଡ଼ିକ ମରିଯିବେ ।

୧୪ । ମାଛ ଭଲ ବଢ଼ାଇବାର ଇଚ୍ଛା ଥିଲେ ପୋଖରୀରେ ପ୍ରକୃତି ଯେତିକି ଖାଦ୍ୟ ରଖିଥିବ କେବଳ ତା'ରି ଉପରେ ନିର୍ଭର ନକରି ଚାଷ ଜମିରେ ସାରଦେଲା ଭଳି ପୋଖରୀରେ ସାର ଦେବା ନିଶ୍ଚୟ ଭଲ । କିନ୍ତୁ ଆମେମାନେ ଜମିରେ ଗୋବର, ଅଳିଆ ଇତ୍ୟାଦି ସିଧାସଳଖ ପକାଇ ନଦେଇ ଖାତ କରିସାରେ ଯାଇ ପକାଉ ।

ଠିକ୍ ମେନ୍ଥଡଲ ହେକ୍ସାପ୍ଲୁନିକ ସାର କମ୍ପୋଷ୍ଟ ନର୍ଦ୍ଦମା ମଇଳା, ଗୁହାଳ, ଚେଙ୍ଗେଷଇ ଘର ଓ କଂସାଇ ଖାନାର ଆବର୍ଜ୍ଜନା, ଧାନ, ଗହମ, ଅଗାର, କୁଣ୍ଡା ବା ଗୋବର ଇତ୍ୟାଦି ପୋଖରୀରେ ନେଇ ସିଧା ସଳଖ ପକାଇ ଦେଲେ ଲାଭ ଅପେକ୍ଷା କ୍ଷତି ହେବ ବେଶି ।

୧୫ । ମାଛ ଛାଡ଼ିବାର ଆଠ ଦିନଦିନ ପୂର୍ବରୁ ପୋଖରୀରେ ସାର ବା ଖତ ପକାଇ ଦେଇ ପାଣିଟାକୁ ଅନ୍ତତଃ ଥରେ ଭଲ କରି ଘାଣ୍ଟିଦେବା ଦରକାର ।

---

# ଭିନ୍ନ ଭିନ୍ନ ପ୍ରକାରର ମାଛ

ଭାକୁର, ରୋହି, ମିରକାଳିଙ୍କୁ ପୋଖରୀରେ ଛାଡ଼ି ଦେଲେ ଶୀଘ୍ର ଶୀଘ୍ର ବଢ଼ନ୍ତି ବୋଲି ସେମାନଙ୍କ ପାଇଁ କରି ବେଶି ସୁବିଧା ହୋଇଥାଏ । ଏଠି ସେହି ଜାତିର କେତେକ ମାଛ ଓ ଅନ୍ୟ କେତେକଙ୍କର ପରିଚୟ ଦିଆଗଲା ।

## ଭାକୁର

ଆସାମ, ବଙ୍ଗଳା, ବିହାର ଏବଂ ଓଡ଼ିଶାକୁ ଛାଡ଼ି ଦେଲେ ଦକ୍ଷିଣରେ ଗୋଦାବରୀ ନଦୀ ପର୍ଯ୍ୟନ୍ତହିଁ ଏ ମାଛ ମିଳୁଥିଲେ । ଏବେ କୃଷ୍ଣା ଓ କାବେରୀ ନଦୀରେ ଦେଖା ଯାଉଛନ୍ତି ।

ଭାକୁର ତ 'ଉପର ପାଣି ଚର' ମାଛ । ସେଇଥି ପାଇଁ ପୋଖରୀରେ ଜାଲ ପକାଇ ଟଣାଇ ଭାକୁରତକ ଘୁଞ୍ଚି ହୋଇ ଆସନ୍ତି । ସହଜରେ ଧରା ପଡ଼ି ଯାଆନ୍ତି ବୋଲି ତାଙ୍କୁ 'ହୁଣ୍ଡା

ମାଛ' ବୋଲି ମଧ୍ୟ କହନ୍ତି । ସେମାନେ ପ୍ରକୃତରେ ଦୁଷ୍ଟ ବୁଲନ୍ତି—ନିଜ ପେଟ ପୂରାଇବା ପାଇଁ ପାଣିର ଉପର ଅଂଶରେ



ସବୁବେଳେ ବୁଲୁ ଥାଆନ୍ତି । ପାଣିରେ ଭାସୁଥିବା ଅସଂଖ୍ୟ ପୋକ ଯୋକ ଓ, ସୂକ୍ଷ୍ମ ଉଦ୍ଭିଦ ହେଲା ଏହାର ପ୍ରଧାନ ଖାଦ୍ୟ । ପୋଖରୀ ତଳେ ଯେଉଁ ସବୁ ଛୋଟ ଛୋଟ ଗଛ, ଶିଉଳି, ପୋକଯୋକ ଓ ଗେଣ୍ଡା ଥାଆନ୍ତି ସେଗୁଡ଼ାକ ଭାକୁରର କୌଣସି କାମରେ ଆସନ୍ତି ନାହିଁ । ବରଂ ଯେଉଁ ପୋଖରୀରେ ଏ ସବୁ ବେଶି ସେଥିରେ ଭାକୁର ସାଧାରଣତଃ ଭଲ ବଢ଼ନ୍ତି ନାହିଁ ।

ଭାକୁର ଯାଆଁଳ ପ୍ରାୟ ଇଞ୍ଚେ ଲମ୍ବର ହେଲା ପର୍ଯ୍ୟନ୍ତ କେବଳ ଛୋଟ ଛୋଟ ପୋକହିଁ ଖାଏ ବଞ୍ଚିଲେ ଚଳେ । ସେଥିରୁ ଟିକିଏ ବଡ଼ ହୋଇଗଲେ ସେମାନେ ସମ୍ଭବତଃ ପାଣିରେ ଭାସୁଥିବା ସୂକ୍ଷ୍ମ ଉଦ୍ଭିଦ ମଧ୍ୟ ଖାଆନ୍ତି । କିନ୍ତୁ ଭାକୁର ଯାଆଁଳର ପ୍ରଧାନ ଖାଦ୍ୟ ହେଲା ଛୋଟ ଛୋଟ ପୋକ ଓ ପାଣି-ମାଛି ।

ଏ ମାଛ ଖୁବ ଜଲଦି ଜଲଦି ବଢ଼େ । ତାର ବଢ଼ିବାର ଗତି ହେଲା ମାସକୁ ତିନି ଚାରି ଇଞ୍ଚ ଲେଖାଁ । ପଣ୍ଡିତମାନେ କହୁଛନ୍ତି ବଡ଼ ପୋଖରୀରେ ଅଳ୍ପ ଭାକୁର ଯାଆଁଳ ଛାଡ଼ିଲେ ସିନା ସେ ଗୁଡ଼ା ଏ ଭଳି ଜୋରରେ ବଢ଼ିପାରିବେ, ସାଧାରଣତଃ ବର୍ଷିକିଆ ଭାକୁରଟା ହାତେ ବା ତା'ଠାରୁ ଟିକେ ବେଶି ହେବ । ଏ ମାଛ ଚାରିଫୁଟ ପର୍ଯ୍ୟନ୍ତ ଲମ୍ବା ହୋଇଥାଏ ।

ଭଲ ଖାଦ୍ୟ ଓ ପାଣି ପାଇ ଭାକୁର ମାଛଟା ପହିଲି ବର୍ଷ ଅବଶ୍ୟ ବଡ଼ଟାଏ ହୋଇଯାଏ କିନ୍ତୁ ସେତେବେଳକୁ ସେ ଅଣ୍ଡା ଦେଇ ପାରିବ ନାହିଁ । ଦ୍ୱିତୀୟ ବର୍ଷରେ ଅଣ୍ଡା ଦେଇ ପାରିବ । ସେଥିଯୋଗୁଁ ବର୍ଷିକିଆ ଭାକୁର ପେଟରେ ବହନ ନ ଥାଏ । ଭାକୁରର ବୟସ ବାଇଶ ମାସ ହେଲେ ଯାଇଁ ସେ ବହାନିଆ ହୁଏ ।

ହଠାତ୍ ବର୍ଷା ହୋଇଗଲେ ନଈରେ ଏ ମାଛ ଅଣ୍ଡା ଦେବା ଆରମ୍ଭ କରିଦିଏ । ଆମ ଓଡ଼ିଶାରେ ଜୁଲାଇ ଅଗଷ୍ଟ ବେଳକୁ ଭାକୁର ଯାଆଁଳ ଧରିବା ଆରମ୍ଭ ହୋଇଯାଏ ।

## ରୋହି

ଭାକୁର ସୁଆଦ କି ରୋହି ସୁଆଦ ସେ ବିଷୟରେ ବରାବର ମତଭେଦ ହୁଏ । ରଫା କଲାଭଳି କୁହାଯାଏ ଯେ ଭାକୁର ମୁଣ୍ଡ ସୁଆଦ ତ ରୋହିର ପେଟ ସୁଆଦ ।

ରୋହି ଖୁବ ଜଲଦି ଜଲଦି ବଢ଼େ । ତା' ଯାଆଁଳ ଟିକିଏ ବଢ଼ିଗଲେ ଚିହ୍ନି ହୋଇଯାଏ । ମଟିପାଣି ଓ ଛଳପାଣି ହେଲା ଏହାର ଚରିଭୁଇଁ । ରୋହି ପେଟରୁ ଅନେକ ସମୟରେ ବାଲି, ପଙ୍କ, ପତ୍ରପଟ ଇତ୍ୟାଦି ବାହାରିବାର ଦେଖାଯାଏ । ପାଣିରେ

ଭସୁଥିବା କ୍ଷୁଦ୍ର ପୋକ ଓ ପାଣି ମାଛ ଆଣ୍ଡକୁ ଏହାର ବେଶି ଦୃଷ୍ଟି ନ ଥାଏ । କିନ୍ତୁ ଭାକୁର ଯାଆଁଳ ଭଳି ରୋହି ଯାଆଁଳ



ମଧ୍ୟ ଏହି ସବୁ ପୋକ ଖାଏ । ବଢ଼ିବା ବିଷୟରେ ଭାକୁର ଓ ରୋହି ଉଣେଇଶ ବିଶ । ବର୍ଷିକିଆ ରୋହିଟା ପ୍ରାୟ ଦଶର ଷୋଳ ଇଞ୍ଚ ଲମ୍ବା, ଦ ବର୍ଷ ପୂର ଆସିଲ ବେଳକୁ ମାଛଟା ବଢ଼ନିଆ ହୋଇଯାଏ । ଭାକୁର ଯାଆଁଳ ଓ ରୋହି ଯାଆଁଳ ପ୍ରାୟ ଏକ ସମୟରେ ଧରାଯାଏ ।

## ମିରକାଳି

ଭାକୁର, ରୋହିଙ୍କ ତଳକୁ ମିରକାଳିର ଆସନ । ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ଏ ମାଛର ବାସ ଭୂଇଁ । ଉତ୍ତର ପ୍ରଦେଶ ଓ ପଞ୍ଜାବରେ ମଧ୍ୟ ମିଳେ । ଖୁବ୍ ଛୋଟ ଛୋଟ ଯାଆଁଳ ବାଣ ହୋଇଯାଏ ।

ଏହାର ଯାଆଁଳ ସେହି ଭାକୁରଙ୍କ ଯାଆଁଳ ଭଳି ଉପରତର ହେଲେ ମଧ୍ୟ ଏ ମାଛଟା ପାଣି ତଳେ ବୁଲି ଖାଦ୍ୟ ସଂଗ୍ରହ କରେ । ପୋଖରୀ ତଳରୁ ଯାବତୀୟ ପଚ୍ଚ ଜିନିଷ ଖାଇବାରେ ଏ

ବେଶ୍ ଅଭ୍ୟସ୍ତ । ଏହାର ଦୃଷ୍ଟି ପୋକଯୋକଙ୍କ ଆଡ଼େ ବେଶି ନୁହେଁ —ଗଛ ପତ୍ର ଆଡ଼େ ବେଶି !



ରୋହି ଭାକୁରଙ୍କ ତୁଳନାରେ ମିରିକାଳି ଆସ୍ତେ ଆସ୍ତେ ବଢ଼େ । ବଡ଼ ମିରିକାଳିଟାର ଲମ୍ବ ସାଧାରଣତଃ ତିନ ଫୁଟ । ଏ ମଧ୍ୟ ଦୁଇ ବର୍ଷ ବେଳକୁ ବଢ଼ନିଆ ହୁଏ ।

## କଳାବାଇଁଶି

ଏ ମାଛଟା ମାଲବାର୍‌କୁ ଛାଡ଼ିଦେଲେ ଭାରତର ପ୍ରାୟ ପ୍ରତ୍ୟେକ ଅଞ୍ଚଳରେ ମିଳେ । ସାଧାରଣତଃ ଏମାନଙ୍କର ସଂଖ୍ୟା କମ୍ । ଦେଡ଼ ହାତିଆ ଦି' ହାତିଆ କଳାବାଇଁଶି ସମୟେ ସମୟେ ମିଳନ୍ତି ସତ, କିନ୍ତୁ ଧୀରେ ଧୀରେ ବଢ଼ନ୍ତି । କଳାବାଇଁଶି ଯାଆଁଳ ସହଜରେ ଚିହ୍ନା ପଡ଼ିଯାଏ ।

ରୋହି, ମିରିକାଳି ଯାହା ଖାଆନ୍ତି କଳାବାଇଁଶି ତା' ଖାଏ । ତା' ସହିତ ପୋଖରୀ ତଳୁ ପଙ୍କରୁ ଛୋଟ ଗେଣ୍ଡାଳୁଆ ଓ ଅନ୍ୟ

ପୋକଯୋକ ଖାଏ । ଖୁବ ଶ୍ରେଷ୍ଠ ପାଆଁଳର ଓ୍ଵରବା ଅଭ୍ୟାସ ରୋହି ଭକୁରଙ୍କ ପାଆଁଳ ଭଳି ।



ଭକୁର, ରୋହି, ମିରକାଳି ଓ କଳାବାଇଁଶି ଜାତିର ଆହୁରି ଅନେକ ପ୍ରକାରର ମାଛ ଭାରତର ଭିନ୍ନ ଭିନ୍ନ ଅଞ୍ଚଳରେ ଅଛନ୍ତି । କିନ୍ତୁ ଆମ ଓଡ଼ିଶାରେ ସେଗୁଡ଼ିକ ମିଳନ୍ତି ନାହିଁ ବୋଲି ସେମାନଙ୍କ ବିଷୟରେ ଲେଖିବାର ବିଶେଷ କିଛି ଆବଶ୍ୟକ ନାହିଁ ।

ଏହି ଜାତିର ମାଛ ଇଉରୋପରେ ମଧ୍ୟ ଅଛନ୍ତି । ସିଂହଳରୁ ସେମାନଙ୍କୁ ଭାରତକୁ ପନ୍ଦର ବର୍ଷ ତଳେ ଆଣି ପରୀକ୍ଷା କରି ଦେଖା ଯାଉଛି ଏ ଦେଶର ଜଳବାୟୁରେ ସେମାନେ ଭଲ ବଢ଼ିବେ କି ନାହିଁ । ଶୀତପ୍ରଧାନ ଦେଶର ପାଣିରେ ଏମାନେ ରହନ୍ତି । କିନ୍ତୁ ଦେଖା ଯାଉଛି ଗ୍ରୀଷ୍ମ ପ୍ରଧାନ ଦେଶର ପାଣିକୁ ବି ସେମାନେ ଆଦର ପାଉଛନ୍ତି । ସେମାନଙ୍କୁ ପ୍ରଥମେ ଆଣି ମାନ୍ଦ୍ରାଜର ନୀଳଗିରି ପାହାଡ଼ ଅଞ୍ଚଳରେ ରଖାଗଲା, ପରେ ଭାରତର ଭିନ୍ନ ଭିନ୍ନ ରାଜ୍ୟକୁ ସେମାନଙ୍କୁ ପଠାଯାଇଛି । ଏମାନେ ଖୁବ୍ ବଡ଼ ବଡ଼

ଚୁଅନ୍ତି । ମାନ୍ଦ୍ରାଜରେ କୋଳସେରିଆ ମାଛ ଧରା ହୋଇଛନ୍ତି । ଦେଖାଯାଉଛି ଏମାନେ ସବୁ ପ୍ରକାରର ଖାଦ୍ୟ ଖାଇପାରନ୍ତି । ବର୍ଷେ ପୂରିଲାବେଳକୁ ଏମାନେ ବଢ଼ନ୍ତିଆ ହୋଇ ଯାଆନ୍ତି । ସେତେବେଳକୁ ଏହାର ଲମ୍ବ ହୋଇ ଯାଇଥାଏ ପ୍ରାୟ ୧୮ ଇଞ୍ଚ ଓ ଓଜନ ଏକ ସେରରୁ ଦେଢ଼ସେର ଭିତରେ । ବର୍ଷର ସବୁ ସମୟରେ ଏମାନେ ବଢ଼ନ ଘୁଞ୍ଚନ୍ତି । ଗ୍ରୀଷ୍ମ ପ୍ରଧାନ ଦେଶର ପାଣିରେ ଏମାନେ ବଢ଼ୁଥିଲେ ମଧ୍ୟ ଆମ ଦେଶର ନଈରେ ଅଣ୍ଡା ଦେଇ ନାହାଁନ୍ତି । ଏମାନେ ପୋଖରୀରେ ଜନ୍ମ ହୁଅନ୍ତି । ଏହାର ଜନ୍ମଗୁଡ଼ାକ ଟିକଏ ଅଠାଳିଆ ହୋଇ ଥିବାରୁ ପାଣି ଭିତରେ ପଡ଼ିଥିବା ପଥରେ ଲଗି ଯାଆନ୍ତି । ଏହାର ଯଆଁଳ ଆମ ଭାକୁର ଯଆଁଳ ଠାରୁ ବେଶି କଷ୍ଟସହିଷ୍ଣୁ । ଏମାନଙ୍କୁ ଦୂରକୁ ପଠାଇବାରେ ସେଇଥିପାଇଁ ସୁବିଧା ହୁଏ ।

## ରାଜ ପୋହଳା

ଆନ୍ଧ୍ର, ଓଡ଼ିଶା, ବଙ୍ଗଳା ଓ ଆସାମରେ ଏ ମାଛ ସାଧାରଣତଃ ମିଳନ୍ତି । ଆମ ଓଡ଼ିଶାରେ ଫୁଟେ ଲମ୍ବ ପର୍ଯ୍ୟନ୍ତ ପୋହଳା ଧରା ହୁଏ, ଆସାମ ପ୍ରଭୃତିରେ ଦୁଇଫୁଟ ପର୍ଯ୍ୟନ୍ତ ବଢ଼ନ୍ତି । ଭାକୁର, ରୋହିଙ୍କ ସଙ୍ଗରେ ଗଡ଼ିଆରେ ଏମାନଙ୍କୁ ମଧ୍ୟ ପାଳନ୍ତି । ଏହାର ଦେହଟା ଖୁବ୍ ଚକ୍ ଚକ୍ ଦେଖାଯାଏ । ଛୋଟବେଳେ ମିରିକାଳି ଓ ପୋହଳା ପ୍ରାୟ ଏକାଭଳି ଦେଖା ଯାଆନ୍ତି । ଏ ଦୁଇ ଜାତି ମାଛଙ୍କର ଚରା ଅଭ୍ୟାସ ଏକାଭଳି, ଅର୍ଥାତ୍ ପୋଖରୀ ତଳେ ପଙ୍କରେ ଚରନ୍ତି । ପଚା ଗଛପତ୍ର ଓ ସୂକ୍ଷ୍ମ ସୂକ୍ଷ୍ମ ଉଦ୍ଭିଦ ହେଲା ଏହାର ପ୍ରଧାନ ଖାଦ୍ୟ । ଭାକୁର ରୋହି ମିରିକାଳିଙ୍କ ଭଳି ପୋହଳାଟା ଜଲଦି ବଢ଼ିବା ମାଛ ନୁହେଁ ।

ଏକରକମଆ ପୋଖରୀଟିରେ ଅନ୍ୟ ମାଛଙ୍କ ସାଙ୍ଗରେ ଏହାକୁ ଛାଡ଼ ଦେଖାଯାଇଛି ଯେ ପ୍ରଥମ ବର୍ଷ ପ୍ରାୟ ୯ଇଞ୍ଚ ବଢ଼ିଛି । ଏ ମାଛ ମଧ୍ୟ ପୋଖରୀରେ ପୁଅଁଳ ଦିଏନାହିଁ । ନଈରୁ ପୁଆଁଳ ଧରିଆଣି ଛାଡ଼ିବାକୁ ପଡ଼େ ।

## ସେରଣା

ଏ ମାଛ ପ୍ରାୟ ଫୁଟେ ପର୍ଯ୍ୟନ୍ତ ବଢ଼େ । ଭାରତର ସବୁ ଅଞ୍ଚଳରେ ସେରଣା ମିଳେ । ଅନ୍ୟ ପୁଆଁଳ ସାଙ୍ଗରେ ଯଦି ମିଶି ଚାଲି ଆସିଥାନ୍ତା ଭଲ, ନଚେତ୍ ଏ ପୁଆଁଳ ପାଇବାକୁ କେହି ଚେଷ୍ଟା କରିଥିବାର କାହିଁ ଜଣା ପଡ଼େ ନାହିଁ । ଗୁଣ୍ଡି ନ ଖାଇଲେ ଏହାର ପେଟ ପୂରେନାହିଁ । ପୋକଯୋକ, ପତ୍ର ପଚର ଇତ୍ୟାଦି ଯାହାପାଏ ଖାଇ ଚାଲିଯାଏ । ନଈରେ ପୁଆଁଳ ଦିଏ—ପୋଖରୀରେ ନୁହେଁ । କାହିଁକି କେଜାଣି ସେରଣା ପୁଆଁଳରୁ ଅଳ୍ପ କେତେକ ଶେଷପର୍ଯ୍ୟନ୍ତ ଜୀଇରହନ୍ତି ଓ ଜଲ୍‌ଦି ଜଲ୍‌ଦି ବଢ଼ନ୍ତି । ବର୍ଷ ପୂରିଲା ବେଳକୁ ଏ ମାଛ ବଡ଼ନଆ ହୋଇଯାଏ ।

## ଶେଉଳ

ଭାରତର ଅନେକ ଅଞ୍ଚଳରେ ଏ ମାଛ ମିଳେ ଓ ଆମ ଦେଶର ପ୍ରାୟ ସବୁ ପୋଖରୀରେ ଅଳ୍ପ ବହୁତେ ଶେଉଳ ମିଳନ୍ତି ବୋଲି କହିଲେ ଭୁଲ ହେବନାହିଁ । ଏ ମାଛର ଆଦର ମଧ୍ୟ କମ୍ ନୁହେଁ । ପଞ୍ଜାବ, ମଧ୍ୟପ୍ରଦେଶ, ହାଇଦ୍ରାବାଦ, ମହୀଶୂର, ତ୍ରିବାଙ୍କୁଡ଼ ଓ କୋଚିନ ପ୍ରଭୃତିରେ ଏହାର ଆଦର ଖୁବ୍ ବେଶି । ଭଲୁର ବେଳେ ଛୋଟ ଶେଉଳ ଖାଇବାକୁ ସେମାନେ ଭାରି ଆଗ୍ରହ

ଦେଖାନ୍ତି । ଶେଉଳଟା ହେଲା ଗୋଟାଏ "ମାଛଖିଆ" ମାଛ । ଏକୁର ଛୋଟ୍ଟ ପୋଆଁଳ, ପୋକଯୋକ, ଛୋଟ ବେଙ୍ଗ ଓ ବେଙ୍ଗଫୁଲ ଓ ଅନ୍ୟ ପାଣିଆଙ୍କୁ ମଧ୍ୟ ଧରି ଖାଇଯାଏ । ଶେଉଳ ପୋଆଁଳର ପ୍ରଧାନ ଖାଦ୍ୟ ହେଲା 'ଭୂଆପୋକ' ।

ଏ ମାଛଟି ପୋଖରୀରେ ପୋଆଁଳ ଦିଏ । ବର୍ଷର ଯେ କୌଣସି ସମୟରେ ଦେବାର ଦେଖାଯାଏ ତେବେ ବର୍ଷାର ଠିକ୍ ପୂର୍ବରୁ ଓ ବର୍ଷା ଋତୁରେ ଗଡ଼ିଆ ପୋଖରୀରେ ଶେଉଳ ପୋଆଁଳ ଖେଳେଇବା ବେଶି ଦେଖାଯାଏ । ଜ୍ୟେଷ୍ଠ ମାସରେ ପୋଖରୀରେ ଅଳ୍ପ ପାଣିଥିଲେ ମଧ୍ୟ ଶେଉଳ ପୋଆଁଳ ଖେଳାଏ । ପ୍ରାୟ ଦଶଇଞ୍ଚ ଲମ୍ବ ହେଲା ବେଳକୁ ଅଣ୍ଡାଦେବା ଆରମ୍ଭ କରେ । ଅଳ୍ପ ପାଣିରେ ଯେଉଁଠିକୁ ଛୋଟ ଛୋଟ ଘାସ ଘଞ୍ଚ ହୋଇଥାଏ, ସେଇଥିରୁ କିଛି ଛୁଣ୍ଡି ଗୋଟାଏ ଗୋଟାଏ ବସାଭଳି ହୋଇଥାଏ ଓ ସେଇଥିରେ ମାଈ ଶେଉଳ ଅଣ୍ଡାଦେଲା ପରେ ଅଣ୍ଡିରା ଓ ମାଈ—ଦୁହେଁ ଯାକ ସେ ବସା ଜଗନ୍ତି । ଚବିଶରୁ ଅଠଚାଳିଶ ଘଣ୍ଟା ଭିତରେ ଅଣ୍ଡାରୁ ଛୁଆ ବାହାରି ପଡ଼ନ୍ତି ଓ ଖୁବ୍ ଜଲ୍ଦି ଜଲ୍ଦି ବଢ଼ନ୍ତି । ପ୍ରାୟ ପନ୍ଦରଟା ଦିନରେ ଇଞ୍ଚେ କେଇଟାଏ ଲମ୍ବ ହୋଇ ଅଠର କୋଡ଼ିଏ ଦିନ ବେଳକୁ ପାଞ୍ଚପାଆରୁ ଟପି ଯାଇଥାନ୍ତି । ମୁଁ କୌଣସି ପୋଖରୀରେ ଅଳ୍ପ ଖାଦ୍ୟ ବା ଖାଦ୍ୟଥିଲେ ମଧ୍ୟ ବର୍ଷକରେ ଶେଉଳଟା ବଢ଼ି ପ୍ରାୟ ଫୁଟେ ଲମ୍ବ ହୋଇଯାଏ ଓ ଯଥେଷ୍ଟ ଭଲ ଖାଦ୍ୟ ପାଇଲେ ଏକ ବର୍ଷରେ ହାତେଲମ୍ବ ହୋଇ ଥିବାର ପ୍ରମାଣ ରହିଛି । ଥରକରେ ଗୋଟାଏ ଶେଉଳ 'ମନ୍ଦାଏ' ପୋଆଁଳ ଦେଇ ଖେଳେଇବା ଦୃଶ୍ୟ ଭାରି ସୁନ୍ଦର ।

# ଶାଳ

ଶାଳ ମାଛଟା ଶେଉଳ ଜାତିର ହେଲେ ମଧ୍ୟ ଆମ ଓଡ଼ିଶାରେ କେତେ ଜାଗାରେ ଲୋକେ ତାକୁ ଖାଆନ୍ତି ନାହିଁ । ତା' ଦେହରେ ଚକା ଚକା ଚିହ୍ନ ଭଳି ଥାଏ । ଶ୍ରେଷ୍ଠ ପୋଖରୀରେ ଏଗୁଡ଼ା ମୋଟେ ରଖାନ୍ତି ନାହିଁ । ବଡ଼ ବଡ଼ ଜୋର, ଘାଟ ଓ ଖୁବ୍ ବଡ଼ ପୋଖରୀ ହେଲା ଶାଳମାଛର ରହିବା ସ୍ଥାନ । ଶ୍ରେଷ୍ଠ ପୋଖରୀରେ ଏ ମାଛ ମୋଟେ ଯାଆଁଳ ଦେବ ନାହିଁ । ଅନ୍ୟମାନଙ୍କୁ ଖାଇବା ପାଇଁ ଶାଳ ଗୋଟାଏ ଯମ ! ଏହାର ମାଛ ଖାଇବା ଅଭ୍ୟାସ ଏତେ ଜୋର୍ ଯେ, ଶ୍ରେଷ୍ଠ ଖାଲଆରେ ଗୁଡ଼ାଏ ଶ୍ରେଷ୍ଠ ଶାଳ ଛାଡ଼ିଦେଲେ ଦୁର୍ବଳ ଶାଳକୁ ନିଜ ଜାତିର ହେଉଥିବାରୁ ଖାଇ ଖାଇ ଶେଷକୁ ଅଳ୍ପ କେତୋଟା ମାତ୍ର—ଏପରିକି ଗୋଟିଏ ମାତ୍ର ରହିଯାଏ । ବର୍ଷିକିଆ ଭକୁର ପେଣ୍ଡାକୁ ଶାଳ ଖାଇଯିବାର ଦେଖା ଯାଇଛି ।

ଶେଉଳ ଅପେକ୍ଷା ଶାଳ ବେଶୀ ବଢ଼ିଯାଏ । ଗୁଡ଼ିଏ ଫୁଟ ଲମ୍ବ ଓ ଦଶ ବାର ସେର ଓଜନର ଶାଳ ଆମ ଭିତରୁ ଅନେକ ଲୋକ ଦେଖିଥିବେ । ଏ ମାଛ ଖୁବ୍ 'ଜୋରଦାରିଆ' ବୋଲି ଯେ କୌଣସି ମାଛ ଧରାଳୀଠାରୁ ଶୁଣିବ । ଗୋଟାଏ ଜୋର ମୁଣ୍ଡିଆ ମାରି ପଙ୍କ ଭୂଷି ଦେଇ 'ଜାଲ ପୋକୁହା'ର ବୁଦ୍ଧି ବଣା କରି ଶାଳ ଖସି ଯିବାର ଦେଖାଯାଏ । ବଡ଼ ଜୋର ଓ ଘାଟରେ ତେଣା ଧରି ଗୋଖାମାନେ ଦିନ ତମାମ ଶାଳ ମାରିବା ପାଇଁ ବୁଲୁଥିବାର ଦେଖି ହୁଏତ ମନେ ହେଉଥିବ ଯେ ସେ ସମୟ ନଷ୍ଟ କରୁଛନ୍ତି, କିନ୍ତୁ ଗୋଟାଏ ଶାଳ ମାରି ପାରିଲେ ତା'ର ପରିଶ୍ରମ ସାର୍ଥକ ହୋଇଗଲା । ଗୋଟାଏ 'ଶାଳ ଯାଆଁଳ ମନ୍ଦା' ଧରି

ଆଣିଲେ ଦୁଇ କ'ଣ ହୋଇପିବ । ବୈଶାଖ ଜ୍ୟେଷ୍ଠରୁ ଅଷାଢ଼ ଶେଷ ସୁଦ୍ଧା ଶାଳ ଯାଆଁଳ ଗୁଡ଼େ । ବର୍ଷିକିଆ ଶାଳଟିଏ ପ୍ରାୟ ତିରିଶ ଇଞ୍ଚ ଲମ୍ବ ହୋଇପିବାର ଦେଖା ଯାଇଛି ।

## ଗଡ଼େଇ ବା ଗଡ଼ିଶା

ଗଡ଼େଇ ମାଛଟା ଶେଉଳ ଜାତିର । ଶେଉଳ ଯେଉଁ ଋତୁରେ ଓ ଯେପରି ଯାଆଁଳ ଦିଏ ଗଡ଼େଇ ସେହିପରି ଋତୁରେ ସେହିପରି ଯାଆଁଳ ଦିଏ । ଆଠ ଦଶ ଇଞ୍ଚ ପର୍ଯ୍ୟନ୍ତ ବଢ଼ିବାର ଦେଖାଯାଏ ।

## କଉ

କାରଣଟା ଠିକ କହି ହେବ ନାହିଁ—କିନ୍ତୁ କଉଟାକୁ ସମସ୍ତେ 'ପଥ୍ୟ ମାଛ' ବୋଲି କହନ୍ତି । ରୋଗୀର ରୋଗ ଭଲ ହୋଇ ଯେତେବେଳେ 'ପେଟ ଲାଗିବା' କଥା ଉଠିଥାଏ ସେତେବେଳେ ଅନ୍ୟ କୌଣସି ମାଛ ନ ଦେଇ କଉ ଝୋଳ ଦିଆଯାଏ । ସେଇଥିପାଇଁ ସମୟେ ସମୟେ କଉ ସେରକର ଦାମ ଖଜୁରି ସେରକର ଦାମଠୁଁ ବେଶି ହୋଇଯାଏ । କେବଳ ଭାରତବର୍ଷରେ ନୁହେଁ, ଦକ୍ଷିଣପୂର୍ବ ଏସିଆର ରାଜ୍ୟମାନଙ୍କରେ ମଧ୍ୟ ଏ ମାଛ ମିଳେ । ଅନ୍ୟ ପୋକଯୋକ ଖାଇ ବୋଧ ହୁଏ ଯାଉଥିବାରୁ ଖଜୁରି ଗୋହି ଯାଆଁଳଙ୍କ ଆଡ଼େ କଉ ବେଶି ଆଖି ପକାଏ ନାହିଁ କହିଲେ ଚଳେ ଓ ସେମାନଙ୍କ ଯାଆଁଳ ଟିକିଏ ବଡ଼ ହୋଇଗଲେ କଉ ପେଟକୁ ଯିବା ବିପଦରୁ ପାର ହୋଇଯାଏ ।

ଖୁବ୍ ବେଶି ହେଲେ କଉର ଲମ୍ବ '୪' ଇଞ୍ଚରୁ ବେଶି ହୁଏ ନାହିଁ । ଶେଉଳ ଗଡ଼ିଶ ଯେଉଁ ସମୟରେ ଓ ଯେପରି ଭାବରେ ଯାଆଁଳ ଦିଅନ୍ତି, କଉ ସେହି ସମୟରେ ଓ ସେହିପରି ଭାବରେ ଦିଏ । ବର୍ଷିକିଆ କଉ ଯାଆଁଳ ଦେବା ଆରମ୍ଭ କରେ ।

## ସିଂଘି ବା ରଡା

ରଡା ମାରିହେଲେ ଖୁବ୍ ଝଟେ । ସମୟେ ସମୟେ ଫୁଲି ଯାଏ ଓ ଯଦି କୋଉଥିରେ ବିନ୍ଧି ଦେଇଛି ଜ୍ୱର ହୋଇଯାଏ । ସେଇଥିପାଇଁ ତାକୁ ମଶିଣି ଉପରେ ଓ ଧରା ପଡ଼ିଲେ ଆଗ ତା ବିଷକଣ୍ଟା ଭାଙ୍ଗି ଦିଏ ବା ମାରି ପକାଏ । ଗାଲି ସାଙ୍ଗକୁ ଏହା ଦେହରେ ଫୁସ୍ ଫୁସ୍ ଭଳି ଅନ୍ୟ 'ପବନ ନଳୀ' ଯନ୍ତ୍ର ଥିବାରୁ ପବନରୁ ମଧ୍ୟ କେତେକ ପରିମାଣରେ ନିଶ୍ୱାସ ନେଇ ବଞ୍ଚିପାରେ । ଅନ୍ୟ ମାଛଙ୍କ ଯେଉଁ ମାଛଗୁଡ଼ିକ ବିପଦ—ରଡା ସେମାନଙ୍କ ଭିତରେ ଗଣା ଯାଉଥିଲେ ମଧ୍ୟ ନିଜ ପେଟ ପୂରାଇବା ପାଇଁ ଅନ୍ୟ ଛୋଟ ମାଛ ଖୋଜିବାରେ ବ୍ୟସ୍ତ ନ ରହି ପୋକଯୋକ, ପଙ୍କତଳ ପଚାପଚ ଇତ୍ୟାଦି ଓ ବେଳେବେଳେ ମାଛ ପାଇଲେ ତା' କାମ ଚଳାଇ ନିଏ । ପଙ୍କ ଓ ବାଲି ମଧ୍ୟ ଖାଇଯାଏ । ଏହା ବିଷୟରେ ବିଶେଷ ତଥ୍ୟ ଯୋଗାଡ଼ କରିପାରି ନାହାନ୍ତି ବୋଲି ମାଛଶାସ୍ତ୍ରର ପଣ୍ଡିତମାନେ କହନ୍ତି ।

## ମାଗୁର

କଉ ସାଙ୍ଗକୁ ମାଗୁର ହେଲା ଆଉ ଗୋଟାଏ 'ମାଟେଙ୍ଗ ମାଛ' ଓ ସମସ୍ତେ ତାକୁ ଖାଇବାକୁ ଭଲ ପାନ୍ତି । ରଡା ଓ ମାଗୁର ଏକ ଜାତିର ମାଛ ହେଲେ ମଧ୍ୟ ମାଗୁର ରଡାଠୁଁ ଢେର

ବଢ଼ି ହୁଏ । ମାଗୁର ମଧ୍ୟ ମାରିଦେଲେ ଖୁବ ବଢ଼େ ଓ ତା ବେଳକମୁଳ କଣ୍ଟାରେ ବିଷ ଅଛି । ଖାଇବା ପିଇବା ଓ ଯାଆଁଳ ଦେବାରେ ଉତା ସହିତ ଏହାର ଯଥେଷ୍ଟ ମେଳ ଅଛି । ଏହାର ବୃଦ୍ଧିଚଳନ ବିଷୟରେ ମଧ୍ୟ ବିଶେଷ କିଛି ତଥ୍ୟ ପଣ୍ଡିତମାନେ ଏ ପର୍ଯ୍ୟନ୍ତ ସଂଗ୍ରହ କରି ପାରି ନାହାନ୍ତି ।

## ଚିତଳ

ଭାକୁର ରେହି ମିରକାଳ ଯାଆଁଳ ପୋଖରୀରେ ଗୁଣ୍ଡି ପିଏ ମାଛଚାଷ କରିବାକୁ ବାହାରିଥିବ ତା ମନକୁ ସବୁବେଳେ ଉଦ୍‌ବେଗ ଥିବେ ଦୁଇଟା ମାଛ—ବଳିଆ ଓ ଚିତଳ । ସିନ୍ଧୁ, ଗଙ୍ଗା, ବ୍ରହ୍ମପୁତ୍ର ଓ ମହାନଦୀ ଭଳି ବଡ଼ ବଡ଼ ନଦୀମାନଙ୍କର ଉପନଦୀ ଓ ଶାଖାନଦୀ ସମେତ ଛୋଟ ଛୋଟ ନଦୀରେ ଚିତଳ ଚହନ୍ତି ଓ ଖୁବ ବଡ଼ ବଡ଼ ମଧ୍ୟ ହୁଅନ୍ତି । ତିନିହାତ ଲମ୍ବର ଚିତଳ ଅନେକ ସମୟରେ ମିଳେ । ତା ଦେହଟା ଖୁଦିଲଭଳି ହୋଇଥିବାରୁ ବେଶ ଓଜନ ଉଠେ । ଏ ମାଛ ବଡ଼ ହୋଇଗଲାପରେ ପ୍ରଧାନତଃ ଅନ୍ୟ ମାଛମାନଙ୍କୁ ଖାଇ ବଢ଼େ । ଚିତଳ ଯାଆଁଳ ମଧ୍ୟ ଭାକୁର ରେହି ଯାଆଁଳ ବହୁ ସଂଖ୍ୟାରେ ଧରି ଖାଇଯାଏ । ଚଳନ୍ତି ପାଣି ସାଙ୍ଗକୁ ଚିତଳ ବନ୍ଧ ପାଣିରେ ମଧ୍ୟ ଜାଆଁଳ ଦିଏ । ପାଣି ଭିତରେ ବୁଡ଼ିକରି ରହିଥିବା କୌଣସି ପଦାର୍ଥରେ ଅଣ୍ଡାଗୁଡ଼ିକ ଲାଗି ରହିଥାଏ । ଅଣ୍ଡିରା ଓ ମାଈ ଉଭୟେ ଅଣ୍ଡା ବସାକୁ ଜଗି ରହନ୍ତି । ଜାଆଁଳ ଗୁଡ଼ା ଜଲଦି ଜଲଦି ବଢ଼ନ୍ତି—ଦୁଇମାସରେ ପ୍ରାୟ ଫୁଟେ ଲମ୍ବ ହୋଇଯାଆନ୍ତି ।

ଚିତଳ ଯେ ଖୁବ ସୁଆଦ—ଏଥିରେ ସନ୍ଦେହ ନାହିଁ । କିନ୍ତୁ ଗୋଟିଏ ଅସୁବିଧା କଥା ସମସ୍ତେ କହନ୍ତି—ତା ଦେହରେ

କଣ୍ଟକ ସରୁ ସରୁ କଣ୍ଟା—ଖାଇଲାବେଳେ ତଣ୍ଟିରେ ଲାଗେ ଓ ଶୀଘ୍ର ଖାଇହୁଏନାହିଁ—ଡର ମାଡ଼େ । ଏ କଥା ଅବଶ୍ୟ ଠିକ ଯେ ତା ପେଟଠାରେ ବଡ଼ ବଡ଼ କଣ୍ଟାଥାଏ ଓ ସହଜରେ ବାହାରି ଯାଏ । ଚିତଳ ପେଟି ଭଜାର ପ୍ରଶଂସା ସମସ୍ତଙ୍କ ମୁହଁରୁ ଶୁଣିବ । ଓଡ଼ିଶାର କୌଣସି କୌଣସି ଅଞ୍ଚଳରେ ଚିତଳ ମାଛରୁ କଣ୍ଟାତକ ସହଜରେ କାଢ଼ିଦେଇ ରାନ୍ଧିବାର କୌଶଳ ଜାଣନ୍ତି । ଏହାର ମୁଣ୍ଡଟା ଶ୍ରେଷ୍ଠ ଓ ତେଲ୍‌ଠା । ତେଣୁ ଗ୍ଭକୁର ମୁଣ୍ଡ ସହିତ ଏହାର ତୁଳନା କେବେ ହେଲେ ହୋଇ ନ ପାରେ । ପୋଖରୀରେ ଚିତଳ ରହିବୁଲି ଅନ୍ୟ ମାଛଙ୍କୁ ମୂଳରୁ ଖାଇ ସଫା କରିଦେବ ।

ବର୍ତ୍ତମାନ ପର୍ଯ୍ୟନ୍ତ ଚିତଳକୁ ପୋଖରୀରେ ପାଳିବା ଦିଗରେ କେହି ମନ ବଳାଇ ନାହାନ୍ତି—ତେଣୁ କଷ୍ଟ ହେବ ନାହିଁ ଏଡ଼େ ସୁଆଦିଆ ମାଛକୁ ପାଳିବରେ ଲାଭ ହେବ କି କ୍ଷତି ହେବ, କିନ୍ତୁ ଏ କଥା ନିଶ୍ଚୟ ଯେ ଏହାପାଇଁ ସ୍ୱତନ୍ତ୍ର ବ୍ୟବସ୍ଥା କରିବାକୁ ହେବ । ଅନ୍ୟମାଛଙ୍କ ସହିତ ରଖିବା କଥା ଚଳିବ ନାହିଁ ।

## ବାଲିଆ

ବାଲିଆଟା ଯେପରି ବଡ଼ ହୁଏ ଓ ତା' ଦେହରେ ଯେପରି କଣ୍ଟା କମ—ଯଦି ଏଇଟା ଗ୍ଭକୁର ଶ୍ରେଣୀ ଭଳି ଜାତିଆ ମାଛଙ୍କର ସବୁଠୁଁ ବଡ଼ ଶତ୍ରୁ ନ ହୋଇଥାନ୍ତା ତେବେ ସମସ୍ତେ ବ୍ୟବହାର ନିଜ ପୋଖରୀରେ ଦି' ଗୁଡ଼ଟା ବାଲିଆ ପାଳିବା ପାଇଁ । ମାଛଟାଠି କାତି ନ ଥିବାରୁ ସୁଆଦ ସେତେ ଭଲ ନୁହେଁ—ଗାଡ଼ୁଆ ଲାଗେ, ତଥାପି ଖାଦ୍ୟ ସମସ୍ୟା ମେଣ୍ଟାଇବା ଦୃଷ୍ଟିରୁ ବାଲିଆକୁ

କେହ୍ନ ଦୂର ଦୂର କରନ୍ତି ନାହିଁ । ଏହାର ବଡ଼ ପାଟି ଓ ପାଟି ଭିତରେ ମୋଟା ଧାଡ଼ି ଧାଡ଼ି ଦାନ୍ତ ଦେଖି ତା'ନାମ ଦିଆଯାଇଛି "ମଧୁର ପାଣି ମଗର" । ଗୃହପାଳିତ ଲମ୍ବିଲ ବାଳିଆଟାକୁ ଦେଖିଦେଲେ ମାଛଖାଇଲାବାଲାଙ୍କ ମନଟା ଖୁସି ହୋଇଯାଏ । ଏ ମାଛ ଭାରତ ବର୍ଷର ପ୍ରାୟ ସବୁଆଡ଼େ ମିଳନ୍ତି ।

ବାଳିଆଟା ଗୋଟାଏ 'ରକ୍ତପିଇ ମାଛ' ଓ ଭାକୁର, ଶେଉଳ୍ଙ୍କ ବଂଶ ମାରିଦିଏ । ତା' ପାଟିରେ ବହୁତ ଗୁଡ଼ାଏ ଦାନ୍ତ ଖଞ୍ଜି ଦିଆଯାଇଛି ଓ ପାଟିଟା ମଧ୍ୟ ଖୁବ ବଡ଼ । ଏହି ଦୁଇ ସୁବିଧା ଥିବାରୁ ଭାକୁର ପେଣ୍ଠା ଓ ମଧ୍ୟମଜଳିଆ ଭାକୁରଙ୍କୁ ସେ ଗୋଡ଼ାଇ ସହଜରେ ଧରି ପକାଇ କାବୁ କରିଦିଏ ଓ ଖାଇଯାଏ । ତା' ପେଟ ଭିତରୁ ଗୋଟା ଗୋଟା ମାଛ—ଏପରିକି ମଣିଷର ଖଣ୍ଡେ ହାତ ବା ଗୋଡ଼ ବାହାରିବା ଦେଖାଯାଇଛି । ମଣିଷ ଗାଧୋଉଥିବା ବେଳେ ବୋଧହୁଏ ବାଳିଆ ହାତ ବା ଗୋଡ଼ରୁ ଖଣ୍ଡେ ଛିଣ୍ଡାଇ ନେଇ ଗିଳିଦିଏ ।

ତେବେ ଏତିକି ରକ୍ଷା ଯେ, ବାଳିଆଟି ପୋଖରୀରେ ଅଣ୍ଡା ଦିଏ ନାହିଁ—ନଈରେ ବର୍ଷାଦିନେ ଯାଆଁଳ ଛାଡ଼େ । ବର୍ଷକ ଭିତରେ ତିରିଶ ଇଞ୍ଚର ଲମ୍ବ ହୋଇଯାଏ ବୋଲି କୁହାଯାଉଛି ।

ପୋଖରୀରୁ ବାଳିଆକୁ ନ କାଢ଼ିଲେ ଭାକୁର ସେଥିଁ ଯାଆଁଳ ଛାଡ଼ି କିଛି ଲାଭ ନାହିଁ । ଏତେ ଶୀଘ୍ର ଏ ମାଛ ବଢ଼େ—ତଥାପି ଏ ପର୍ଯ୍ୟନ୍ତ ସ୍ୱତନ୍ତ୍ର ପୋଖରୀରେ ଏହାର ଯାଆଁଳ ଛାଡ଼ି କଉଳ ବଢ଼ାଇନ୍ତି ଓ ପାଳିଲେ ଲାଭ ହେବ କି ନାହିଁ ତା'ର ପରୀକ୍ଷା କରା ଯାଇନାହିଁ ।

ବାଳିଆ ଦାନ୍ତ ଗୋଟିଏ ଭଲ କାର୍ଯ୍ୟରେ ଆସେ । ଝୁଡ଼ି ସବୁ ସୂତା କାଟିବାକୁ ହେଲେ ଭଲ ଭୁଜାର ଛୁଆଡକ ଯେତେଦୂର

ସମ୍ଭବ ଗୋଟି ଗୋଟି ଖେଳେଇଲାପରେ କର ଉଣିବା ଦରକାର । ବାଳିଆ ଦାନ୍ତରେ ଭୁଳା ସଫା କରନ୍ତୁ ।

## ଆଳ ବା ଆଡ଼ି

କାତି ନଥାଇ ନଶଥିବା ମାଛଙ୍କ ଭିତରେ ଆଳର ସ୍ଥାନ ଝୁବ୍ ଉଚ୍ଚରେ । ଭାରତର ଗୃହ ଆଡ଼େ ଏହି ମାଛ ଦେଖାଯାଏ । ଗୋଟାଏ ଗୋଟାଏ ଆଳ ଗୃହହାତକୁ ଅଧିକ ଲମ୍ବ ହେବାର ପ୍ରମାଣ ରହିଛି । ବାଳିଆ ଅପେକ୍ଷା ଆଳଟା ଖାଇବାକୁ ଭଲ ଲାଗେ ବୋଲି କେତେକଙ୍କ ମୁହଁରୁ ଶୁଣାଯାଏ ।

ଅନ୍ୟ ମାଛଙ୍କୁ ଖାଇଯିବା ସ୍ୱଭାବଟା ଯଦି ଏହାର ନଥାନ୍ତା ତେବେ ମାଛଚୃଷୀ କେତେ ଖୁସିରେ ନିଜ ପୋଖରୀରେ ନ ପାଳନ୍ତା ! କେବଳ ମାଛ ଖାଇ ସେ ବଞ୍ଚେନାହିଁ—ପୋକଯୋକ, ଛୋଟ ଗେଣ୍ଡା ଓ ସମୟେ ସମୟେ ପାଣି ଭିତରେ ଥିବା ଶିଙ୍ଗଳ ବା ଅନ୍ୟ ଅନାବନା ଛୋଟ ଛୋଟ ଉଦ୍ଭିଦ ମଧ୍ୟ ଖାଇଯାଏ ।

ନଈ ଗଣ୍ଡରେ ବା ଯେଉଁଠି ବେଶି ପାଣିଥାଏ ସେଇଠି ଆଳ ରହେ । ଏ ମାଛର ଅଣ୍ଡାଦେବା ଋତୁ ବଡ଼ିଆ । ଏପ୍ରିଲରୁ ଜୁଲାଇ —ଏହି ଋରମାସ ହେଲା ଏହାର ଅଣ୍ଡାଦେବା ବେଳ । ଅଣ୍ଡାଦେବା ବେଳ ହୋଇଗଲେ ନଈ ଗଣ୍ଡ ତଳେ ବାଲିରେ ଆଳ ଗୋଟାଏ ଓସାରିଆ ଖାଲ ବାଲି ଆଡ଼େଇ ଦେଇ କରେ । ତାକୁ ତାର 'ବସା' ବା 'ପାଲି' ବୋଲି ମାଛ ଧରାଳୀମାନେ କହନ୍ତି । ନଈରେ ଯଦିଓ ସବୁ ସମୟରେ ଆଳଥାଏ ଏହି ଋରମାସ ତାର 'ପାଲି' ତିଆରି ହୁଏ । ସେହି ପାଲିରେ ଅଣ୍ଡା ଦେଇ ଅଣ୍ଡିରା ଓ ମାଈ ଦୁଇଟା ଯାକ ତାଙ୍କ ଅଣ୍ଡାକୁ ଜଗି ରହନ୍ତି । ପାଲିକରି ହୁଏତ ଚରିବାକୁ ଯାଉଥିବେ ।

ପୋଲୁହା, ବା ପୋଲୁହରେ ମାଛ ଧରୁଥିବା ଲୋକେ ପ୍ରଥମେ ନଈ ଗଣ୍ଡରେ ବୁଲି ଠାବ କରନ୍ତି କେଉଁଠି ପାଳି ଅଛି। ଯେଉଁଠି ବାଲିଟା ଟିକିଏ ଖାଲ ହୋଇଛି ଦେଖନ୍ତି; ସେଠୁ ଟିକିଏ ବାଲି ଆଣି ଶୁଙ୍ଘନ୍ତି। ଯଦି ନାକକୁ ଆଇସିଣିଆ ଜଣା ପଡ଼ିଲା, ଧରିନିଅନ୍ତି ସେଠି ଆଳ ବସା ବାନ୍ଧିଲାଣି। ସେ ଜାଗାଟିକୁ ଠାବକରି ଓଉଜଣି ପୋଲୁହ ପକାଇ ଆଳକୁ ଧରିନିଅନ୍ତି। ଠାବ କଲାବେଳେ ଯଦି ସେଇଠି ମାଛଟା ଥାଏ ଫୁରୁଡ଼ି ଯାଏ। କିନ୍ତୁ ବସା ପ୍ରତି ବା ଅଣ୍ଡା ପ୍ରତି ତା'ର ମମତା ଏତେ ବେଶି ଯେ ପୁଣି ଆସି ସେଇଠି ପଡ଼ିଥାଏ। ପାଳଠଁ ଦୂରରେ ପାଣି ବାଟେଇ ଦେଲେ ଆଳ ଫୁରୁଡ଼ି କରି ପଦାରେ ଥିଲେ ଖାଲ ଦେହରେ ଯାଇ ରହିଯାଏ। ସମୟେ ସମୟେ ପୋଲୁହ ପକାଇ ପକାଇ ତା' ଉପରେ ଚଢ଼ଯାଏ ଓ ପୋଲୁହାର ଦାନକ ପରିଶ୍ରମର ଫଳ ମୁଦ୍ରିକ ମଧ୍ୟରେ ମିଳିଯାଏ। ପୋଖରୀରେ ଏ ମାଛ ଯାଆଁଳ ହୁଏ ବୋଲି ବିଶେଷଜ୍ଞମାନେ କହୁଛନ୍ତି ସିନା—ପୋଖରୀ ତଳଟା ବସା ବା ପାଳ ବାନ୍ଧିବାକୁ ଉପଯୁକ୍ତ ନୁହେଁ ବୋଲି ବୋଧହୁଏ ଆମ ଓଡ଼ିଶାର ଅଧିକାଂଶ ପୋଖରୀରେ ଆଳ ଅଣ୍ଡା ଦେବାର ବା ଯାଆଁଳ ଖେଳେଇବାର ଦେଖାଯାଏ ନାହିଁ।

## କଳଙ୍ଗ

ବାଳିଆ ମୁଣ୍ଡର ଆଦର ଭାକୁର ଗୋଛା ମୁଣ୍ଡ ଭଲ' ନ ହେଲେ ମଧ୍ୟ ତାକୁ ଖାଇବାକୁ ଏଇଥି ପାଇଁ ଭଲ ଲାଗେ ଯେ ତା' ମୁଣ୍ଡରେ ମାଂସ ଥାଏ। କିନ୍ତୁ ଆଳ ବା କଳଙ୍ଗ ଖୁବ୍ ବଡ଼ ହେଲେ ସୁଦ୍ଧା ମୁଣ୍ଡଟା ଖପୁରିଆ, ଅର୍ଥାତ୍ ମୁଣ୍ଡରେ ବେଶି ମାଂସ ନ ଥାଏ। କଳଙ୍ଗ ମାଛ କିଛି କମ ବଡ଼ ହୁଏ ନାହିଁ—

ଅଡ଼େଇ ହାତ ପର୍ଯ୍ୟନ୍ତ ଲମ୍ବ ହୁଏ । ଜଳଙ୍ଗ ସପକ୍ଷରେ ଆଉ ଗୋଟାଏ କଥା କୁହାଯାଇପାରେ—ଅନ୍ୟ ମାଛ ଖାଇବାରେ ସେ ବେଶି ସମୟ ନଷ୍ଟ ନ କରି ଛୋଟ ଗେଣ୍ଡା ଖାଇ ପେଟ ପୂରାଇବା ଆଡ଼େ ବେଶି ଧ୍ୟାନ ଦିଏ । ଦୁଇ ଫୁଟ ଲମ୍ବର ଗୋଟାଏ ଜଳଙ୍ଗ ପେଟରୁ ଖୁବ୍ ଶହଟା ଛୋଟ ଛୋଟ ଶାମୁକା ଖୋଳ ବାହାର ଥିବା ଦେଖାଯାଇଛି । ତା ବୋଲି ଯେ ଜଳଙ୍ଗଟା ମାଛ ଖାଏ ନାହିଁ—ଏକଥା ନୁହେଁ । ଜୀବ ଖାଦ୍ୟ ସହିତ ଉଦ୍ଭିଦ ଖାଦ୍ୟ ମଧ୍ୟ ମିଶାଇ ଖାଏ ।

ବର୍ଷା ଦିନେ ଅଣ୍ଡା ଦିଏ । ଏ ମାଛକୁ ପୋଖରୀରେ ଛାଡ଼ି ଲାଭ କ୍ଷତିର ହିସାବ କରାଯାଇ ନାହିଁ ବୋଲି ଜାଣିଲେ ଲାଭ ବା କ୍ଷତି ସେ କଥା କହି ହେବ ନାହିଁ । ପୂର୍ବ ବଙ୍ଗର କେତେକ ଜିଲ୍ଲାରେ 'ଠାକୁର ଘେରି ପୋଖରୀ'ରେ ଗୋଟାଏ ଗୋଟାଏ ଜଳଙ୍ଗ ଛାଡ଼ି ଦିଅନ୍ତି । ସେମାନେ କହନ୍ତି ପୋଖରୀରେ ଗେଣ୍ଡା ଗୁଡ଼ା ବେଶି ହେଲେ ଜଳଙ୍ଗ ସେଗୁଡ଼ାକ ଖାଇଯାଏ ଓ ପୋଖରୀରେ ଗେଣ୍ଡା ସଂଖ୍ୟା ବେଶି ହୋଇପାରେ ନାହିଁ । ଅଳ୍ପ ସଂଖ୍ୟାରେ ଗେଣ୍ଡା ରହିଲେ ଅବଶ୍ୟ କ୍ଷତି ନାହିଁ—ବେଶି ଗୁଡ଼ାଏ ରହିଗଲେ ଦୋଷ ।

## ଅନ୍ୟ ମାଛ

ଉପରେ ଯେତେ ମାଛଙ୍କ କଥା କୁହାଗଲା ସେମାନଙ୍କ ବ୍ୟତୀତ ଆମ ପୋଖରୀରେ ବାଉଁଶ ପତିଆ, ପବତା, ବଟୁଆ, କଣ୍ଟିଆ, ବାଲିକଣ୍ଟିଆ, ଗେଡ଼ି, ମହୁରାଳି, ଭେଡ଼ି, ଜଲ୍ଲା, ପୋହଡ଼ା, ପଲି, ମାକେନ୍ଦି, କୁନ୍ଦି, କୋଡସି ପ୍ରଭୃତି ରହନ୍ତି ଓ

ବଢ଼ନ୍ତି । କିନ୍ତୁ ଏ ସବୁ ଥାଳ ବିଶେଷ କରି ଲାଭ ନାହିଁ ବୋଲି ସେମାନଙ୍କ ବିଷୟରେ ପଣ୍ଡିତମାନେ ତଥ୍ୟ ସଂଗ୍ରହ କରିବାର ଆବଶ୍ୟକତା ଦେଖି ନାହାନ୍ତି ।

---

# ଭିନ୍ନ ଭିନ୍ନ ପ୍ରକାରର ପୋଖରୀ

ବଙ୍ଗଳା, ବିହାର ଓ ଓଡ଼ିଶାରେ ମାଛ ଚାଷ ଭିନ୍ନ ଭିନ୍ନ ଅଞ୍ଚଳରେ କିପରି ହେଉଛି ଓ କ'ଣ କଲେ ମାଛ ଭଲ ବଢ଼ୁଛନ୍ତି ଓ ସବୁ ଆଉ ହିସାବ କରି ଦେଖିଲେ ଲୋକେ ବ୍ୟବସାୟ ଦୃଷ୍ଟିରୁ ଲାଭବାନ ହେଉଛନ୍ତି କି ନାହିଁ ଇତ୍ୟାଦି ବିଷୟରେ ତଥ୍ୟ ସଂଗ୍ରହ ପାଇଁ ଗଲା କେତେ ବର୍ଷ ହେଲା ସରକାରଙ୍କ ତରଫରୁ ବହୁ ଉଦ୍ୟମ ହେଉଛି କିନ୍ତୁ ଲୋକଙ୍କ ସ୍ୱଦେଶବୋଧ ହେଲାଭଳି ନିର୍ଭୁଲ ତଥ୍ୟ ଯୋଗାଇ ଦିଆଯାଇ ପାରୁନାହିଁ । କେହି ଜଣେ ଜଣେ ନିଜ ପୋଖରୀରେ ମାଛ ବଢ଼ାଇ ଲାଭବାନ ହେଉଛନ୍ତି, କିନ୍ତୁ କି ଉପାୟରେ ସେମାନେ ଏଭଳି ଲାଭ ପାଉଛନ୍ତି ସେ କଥା ଫିଟାଇ କହିବାକୁ ସେମାନେ ନାରାଜ । ସେମାନଙ୍କର ଜ୍ଞାନ ଅନ୍ୟମାନଙ୍କୁ ମିଳୁନାହିଁ । ଆଉ କେତେକଙ୍କ ପୋଖରୀରେ ମାଛ ବଢ଼ି ଖୁବ୍ ବଡ଼ ବଡ଼ ହେଉଛନ୍ତି ସତ କିନ୍ତୁ ପୋଖରୀରର ଆୟତନ ତୁଳନାରେ ଯେତେ ଯାଆଁଳ ଛାଡ଼ିବାର କଥା ସେମାନେ ତାହା ଛାଡ଼ି ନ ଥିବାରୁ ଅଳ୍ପ ମଛ ଯଥେଷ୍ଟ ଚରାପାଇ ବଢ଼ିଯାଉଥିବାର ଦେଖା ଯାଉଛି । ଆଉ କିଛିବର୍ଷ ନଗଲା ପର୍ଯ୍ୟନ୍ତ ଆମ ଦେଶର ମାଛଚାଷ ବିଷୟରେ ସମସ୍ତ ତଥ୍ୟ ସଂଗ୍ରହ କରିବା ସମ୍ଭବ ହେବ ନାହିଁ । ତେବେ ସେ ଦିଗରେ ସରକାରୀ ଓ ବେସରକାରୀ ସବୁ ଶ୍ରେଣୀର ଲୋକ ଅକଠାରୁ

ଉଦ୍ୟମ ଚଳାଇଲେ ମାଛ ଚାଷ ବିଷୟରେ ଆମେ ଯଥେଷ୍ଟ ଜ୍ଞାନ ହାସଲ କରିପାରିବା ।

ଆକାର, ଗଭୀରତା, ମାଟି ଇତ୍ୟାଦି ଦିଗରୁ ବିଚାର କଲେ ଆମ ପୋଖରୀଗୁଡ଼ିକୁ ବହୁ ଶ୍ରେଣୀରେ ବିଭକ୍ତ କରାଯାଇପାରେ । ତା'ସାଙ୍ଗକୁ ପାଣି, ପାଣିରେ ଥିବା ମାଛଙ୍କ ପାଇଁ ଉପଯୁକ୍ତ ଖାଦ୍ୟ ଓ ଅନ୍ୟାନ୍ୟ କେତେକ ବିଷୟ ଧରି ବସିଲେ କୌଣସି ଦୁଇଟା ପୋଖରୀକୁ ଏକା ପ୍ରକାରର ବୋଲି କହିବା କଷ୍ଟ । ମାଛ ବଢ଼ାଇବା ଦୃଷ୍ଟିରୁ ପ୍ରତ୍ୟେକ ପୋଖରୀର କିଛି ନା କିଛି ସ୍ୱାତନ୍ତ୍ର୍ୟ ରହିଛି ।

ଏ ସବୁ ସତ୍ତ୍ୱେ ଆମ ପୋଖରୀଗୁଡ଼ାକୁ କେତୋଟି ଶ୍ରେଣୀରେ ଭାଗ କରାଯାଇଛି । ମାଛ ଅଣ୍ଡାରୁ ଛୁଆ ଫୁଟାଇ ଯାଆଁଳ ହେବାଠାରୁ ବଡ଼ ହୋଇ ବିକ୍ରି ହେବା ପର୍ଯ୍ୟନ୍ତ ଭିନ୍ନ ଭିନ୍ନ ଅବସ୍ଥାର ମାଛଙ୍କ ପାଇଁ ସ୍ୱତନ୍ତ୍ର ପୋଖରୀମାନ ନ ହେଲେ ଯୋଜନା ଅନୁଯାୟୀ ମାଛ ଚାଷ କରି ହେବ ନାହିଁ । ମାଛର ଭିନ୍ନ ଭିନ୍ନ ଅବସ୍ଥାରେ କିଭଳି ପୋଖରୀ ଲୋଡ଼ା ତା'ର ଗୋଟାଏ ମୋଟାମୋଟି ବର୍ଣ୍ଣନା ଏଠାରେ ଦେବାପାଇଁ ଚେଷ୍ଟା କରାଯାଉଛି ।

୧ । ନଈରୁ ଫେଣ ଗୁଣିଆଣି ମାଛ ଅଣ୍ଡା ସଂଗ୍ରହର ଉଦ୍ୟମ ଆମ ଓଡ଼ିଶାରେ ସବୁ ଆଡ଼େ ହୁଏ । ଫେଣକୁ ଟିକିଏ ଖେଳେଇ ଦେଲେ ତା ଦେହରେ ଛୋଟ୍ ଛୋଟ୍ ଛୋଟ ମାଛ ଅଣ୍ଡା ଲାଗି ରହିଥିବାର ଦେଖାଯାଏ । ସେଗୁଡ଼ିକୁ ବଡ଼ ପୋଖରୀରେ ସିଧା ଛାଡ଼ି ନଦେଇ ଆଠଫୁଟ ଲମ୍ବ, ଚାରିଫୁଟ ଓସାର ଓ ଦୁଇଫୁଟ ଗଭୀରର ଛୋଟ ଛୋଟ ଖାଲଆ ବା ଗଡ଼ଆରେ ଛାଡ଼ିବା

ଉଚିତ । ଏଗୁଡ଼ିକୁ "ଛୁଆ ଉଚାରିବା ଖାଲିଆ" ବୋଲି କହନ୍ତି (Hatching Pits)

୨ । ଅଣ୍ଡାରୁ ଛୁଆ ଫୁଟି ଗ୍ରେଟ 'ଯାଆଁଳ' ହୋଇଗଲେ ତିନି ଚାରି ଫୁଟ ଗଭୀରର ଗ୍ରେଟ ପୋଖରୀରେ ନେଇ ସେଗୁଡ଼ିକୁ ଛାଡ଼ିଦେବା ଦରକାର । ଏଇଠି ସେମାନେ ୧୫ ଦିନରୁ ମାସେ ପର୍ଯ୍ୟନ୍ତ ରହିବେ । ବର୍ଷାଦିନଆଁ ଗ୍ରେଟ ଖାଲିଆ ନହୋଇ ଯଦି ଗ୍ରେଟ ସ୍ଥାୟୀ ପୋଖରୀରେ ଏଇ ଅବସ୍ଥାର ଯାଆଁଳଙ୍କୁ ଛାଡ଼ିବାକୁ ପଡ଼େ ତେବେ ୪ରୁ ୬ଫୁଟ ଗଭୀର ହେଲେ ମଧ୍ୟ କାମ ଚଳିବ । କିନ୍ତୁ ପୋଖରୀଟି ଲମ୍ବାଳିଆ ଓ ଅଣଓସାରିଆ ହୋଇଥିବା ଉଚିତ । ଏହି ଧରଣର ଲମ୍ବାଳିଆ ପୋଖରୀରୁ ଜାଲ ପକାଇ ଯାଆଁଳଙ୍କ ଧରି ନେବାକୁ ସୁବିଧା ହୁଏ । ଏହି ପୋଖରୀକୁ କହନ୍ତି "ଅନୁଢ଼ ଗଡ଼ିଆ" (Nursery Pond)

୩ । ଗ୍ରେଟ ଗ୍ରେଟ ଯାଆଁଳଗୁଡ଼ିକ ଟିକିଏ ବଡ଼ ହୋଇ ଚାରି ଛଅ ଇଞ୍ଚ ହୋଇଗଲେ ପର୍ଯ୍ୟନ୍ତ ସେମାନଙ୍କୁ ଆଉଗୋଟିଏ ଗ୍ରେଟ ପୋଖରୀରେ ରଖିଲେ ଭଲ । ସେ ପୋଖରୀଟି ଚାରି ୬ ଫୁଟ ଗଭୀର ହେବା ଉଚିତ । ଏହାର ନାମ "ପାଳିବା ପୋଖରୀ" (Rearing Pond)

୪ । ତା'ପରେ ଶେଷରେ ବଡ଼ ପୋଖରୀରେ ନେଇ ସେଗୁଡ଼ିକୁ ଛାଡ଼ିଦେଲେ ସୁନ୍ଦର ବଢ଼ନ୍ତି । ବଡ଼ ଆକାରର ମାଛ ପୋଖରୀର ଲମ୍ବ ଓସାର ଏକେ ହେବ ତା'ର ଗୋଟିଏ ସୀମା ବାନ୍ଧିଦେବା ହୁଏତ ଦରକାର ନାହିଁ । ତେବେ ଗଭୀରତା ପାଞ୍ଚରୁ ଦଶଫୁଟ ହେଲେ ଭଲ । ଏହାର ନାମ ଦେବା "ମାଛ ପୋଖରୀ" (Stocking Pond)

ଏଣିକି ଏହି ଚାରି ପ୍ରକାର ପୋଖରୀ ବା ଖାଲିଆ ବିଷୟରେ ଆଉ ଟିକିଏ ଅଧିକା ଆଲୋଚନା କରିବା ।

## ଅଣ୍ଡାରୁ ଜୁଆ ଉତାରିବା ଖାଲିଆ

ଆମ ଓଡ଼ିଶାରେ ନଈରୁ ଅଣ୍ଡାମିଶା ଫେଣ ସଂଗ୍ରହ କରା-ଯାଉଥିବାରୁ ନଈ ପାଖରେ ଏହି ଖାଲିଆଗୁଡ଼ିକ ଥିଲେ ସବୁଠୁ ସୁବିଧା । ଆଠଫୁଟ ଲମ୍ବ, ଚାରିଫୁଟ ଓସାର ଓ ଦୁଇଫୁଟ ଗଭୀରର ଗୋଟିଏ ଗୋଟିଏ ଖାଲିଆ ପାଖକୁ ପାଖକୁ ଲାଗି ଖୋଳାଗଲେ ଭଲ । ପାଖକୁ ଲାଗି ଖୋଳାଥିଲେ ଗୋଟିଏ ଖାଲିଆରୁ ଆଉ ଗୋଟିଏ ଖାଲିଆକୁ ଦରକାର ପଡ଼ିଲେ ପାଣି ଛାଡ଼ି ଦେବାକୁ ସୁବିଧା ହୁଏ । ଏଇ ଖାଲିଆରୁ ପାଣି କାଢ଼ି ଦେଇ ନୂଆ ପାଣି ଭର୍ତ୍ତି କରି ଦେଉଥିଲେ ମାଛ ଅଣ୍ଡା ଯଥେଷ୍ଟ ପବନ ପାଏ । ପାଣି କାଢି ଖଲାସ କରି ନୂଆ ପାଣି ଭର୍ତ୍ତି କରିଦେବାର ସୁବିଧା ନଥିଲେ ପମ୍ପ ସାହାଯ୍ୟରେ ପାଣି କାଢ଼ି ନେଇ ନିକଟବର୍ତ୍ତୀ ଅନ୍ୟ ଖାଲିଆରୁ ନୂଆ ପାଣି ଭର୍ତ୍ତି କରିଦେଲେ ଚଳିବ । ପାଣି କାଢ଼ିବା ଓ ଭର୍ତ୍ତି କରିବା ଦ୍ୱାରା ମାଛ ଖାଲିଆରେ ଗୋଟାଏ ଧୀର ସ୍ରୋତ ଚାଲିଥିଲା ଭଳି ଅବସ୍ଥା ସୃଷ୍ଟି ହେଉଛି କି ନାହିଁ ସେଥିପ୍ରତି ନଜର ଦେବା ଉଚିତ ।

## ଅନ୍ତୁଡ଼ି ଗଡ଼ିଆ

ଅଣ୍ଡାରୁ ଜୁଆ ଉତାରିବା ଖାଲିଆରୁ ଅଣାଯାଇ ଥାଉ ବା ସିଧା ସଳଖ ନଈରୁ ଖିଅ ଦେଇ ଧରା ହୋଇଥାଉ, ଛୋଟ ଯାଆଁଳକୁ ପ୍ରଥମେ ନେଇ ଅନ୍ତୁଡ଼ି ଗଡ଼ିଆରେ ଛାଡ଼ିଦେବା ବୁଦ୍ଧିମାନର କାମ । ସେତେବେଳେ ସେଗୁଡ଼ିକ ଏତେ ଛୋଟ

ହୋଇଥାନ୍ତି ଯେ ତାଙ୍କୁ "ଆଖିବାଳ" ଭଳି ହୋଇଛନ୍ତି ବୋଲି ସାଧାରଣତଃ କୁହାଯାଇଥାଏ । ଏତେ ଛୋଟବେଳେ ବେଶି ବାଛି ବୋଛିବା ସୁବିଧା ହୁଏନାହିଁ । କାରଣ ନେବାନେବଲେ ଅନେକ ମରି ଯାଆନ୍ତି । ତେଣୁ ଯେତେଦୂର ସମ୍ଭବ "ଅଙ୍ଗୁଳି ଗଡ଼ିଆ" ଯାଆଁଳ ଧରି ସ୍ଥାନର ନିକଟରେ ବା "ଅଣ୍ଡାରୁ ଛୁଆ ଫୁଟିବା ଖାଲିଆ" ନିକଟରେ ହୋଇଥିଲେ ଭଲ, ଏଇ "ଅଙ୍ଗୁଳି ଗଡ଼ିଆ"ଗୁଡ଼ିକ ବେଶି ଖାଲୁଆ ହୋଇ ନଥିବା ଭଲ, କାରଣ ପ୍ରତିବର୍ଷ ଏଗୁଡ଼ିକରୁ ଭଲ ଭାବରେ ପାଣି ଶୁଖିଯିବା ଉଚିତ । ପାଣିଶୁଖି ତଳଟା ଭଲରୂପେ ଖରା ଖାଇଗଲେ ପରବର୍ଷ ଯାଆଁଳ ଜିଆଇଲା ବେଳକୁ ଆଉ କିଛି ବିପଦ ନଥାଏ । ଯେଉଁ ଦେଶରେ ବର୍ଷାଦିନେ କେବଳ ତିନିମାସ ଖଣ୍ଡେ ପାଣି ରହେ ଓ ତା'ପରେ ଶୁଖିଯାଏ, ସେଭଳି ପୋଖରୀ ମଧ୍ୟ ଏହି ଉଦ୍ଦେଶ୍ୟରେ ବ୍ୟବହାର କରାଯାଇ ପାରେ । ସେ ଭଳି ପୋଖରୀ ମିଳିଲେ ଆଉ ଗୋଟିଏ ବଡ଼ ସୁବିଧା ହୁଏ ଯେ ଅଳାତିଆ ବା "ମାଛଖିଆ" ମାଛଗୁଡ଼ାଙ୍କୁ ପ୍ରତିବର୍ଷ ମାରି ସଫା କରିଦେଇ ହୁଏ । ଏହି ଶ୍ରେଣୀର ପୋଖରୀ ତଳ ଖରା ଖାଇ, ପବନ ବାଜି ଯାଉଥିବାରୁ କୌଣସି ବିଷାକ୍ତ ବାଷ୍ପ ଯଦି ପୋଖରୀ ତଳରେ ଥାଏ ଖରା ଓ ପବନ ବାଜି ଶୋଧନ ହୋଇଯାଏ ।

ଯେଉଁ ପୋଖରୀରୁ ପାଣି ମୋଟେ ଶୁଖେନାହିଁ ତା ଦେହରୁ ପାଣି କାଟି ବାହାର କରିଦେବାର ବ୍ୟବସ୍ଥା ରଖିଥିଲେ ଭଲ— ଯେତେବେଳେ ଇଚ୍ଛାକଲେ ପାଣି କାଟି ଶୁଖେଇ ଦେଲେ, ସେ ସୁବିଧା ବି ଯଦି ନଥାଏ, ପମ୍ପ ଲଗାଇ ବା ସେଣା ବା ଟେଣ୍ଡା ସାହାଯ୍ୟରେ ଅନ୍ତତଃ ଦୁଇ ତିନି ବର୍ଷରେ ଥରେ ପାଣିତଳ

ନଗାଡ଼ ଦେଇ ଅନୁଡ଼ ଗଡ଼ଆର ତଳଠାକୁ ଭଲ କରି ଖସ ଖୁଆଇ ପବନ ବଜାଇଦେବା ଦରକାର ।

“ଅନୁଡ଼ ଗଡ଼ଆ” ଯଦି ଠିକ୍ ନଈ କୂଳରେ ଥାଏ, ସମୟେ ଅସମୟେ ଶୋହାଏ ବଡ଼ ଅସୁବିଧା ହୁଏ । ଏଇ ପୋଖରୀରେ ଯାଆଁଳକୁ ପାଳୁଥିବା ବେଳେ ନଈରେ ବଢ଼ିଆସି ଯାଉଥାଏ—ଗୁଡ଼ିଯାଉଥାଏ । ନଈକୂଳକୁ ଲାଗି ଏଇ ଗଡ଼ଆ ଯଦିଥିବ ତେବେ ନଈରେ ପାଣି ଭର୍ତ୍ତି ହୋଇଗଲା ବେଳକୁ ଏଣେ ପାଣି ଝର ପୋଖରୀଟା ଉବୁଟୁବୁ ହୋଇଯିବ ବା ନଈ ପାଣି ଢୋରୁ ଖସି ପଡ଼ିଲେ ଡେଉଁଆରୁ ଯାଆଁଳି ଏକାବେଳକେ ଚାଲି ଲାଗିଯିବ । “ଅନୁଡ଼ ଗଡ଼ଆ”ରେ ଯେପରି ଏଇ ଅସୁବିଧାଟି ନହୁଏ ସେଥିପ୍ରତି ମୂଳରୁ ଦୃଷ୍ଟି ଦେବା ଦରକାର ।

## ପାଳିବା ପୋଖରୀ

ଏଇ ପୋଖରୀରେ ଶ୍ରେଷ୍ଠ ଯାଆଁଳ ତିନଚାରି ମାସ ରଖିବା ଦରକାର ପଡ଼ିପାରେ । ଚାରିରୁ ଛଅ ଇଞ୍ଚ ଲମ୍ବ ହେଲା ପରେ ଯାଇଁ ବଡ଼ ମାଛ ପୋଖରୀରେ ଛଡ଼ାଯିବେ । ପୋଖରୀଟି ଯଦି ଲମ୍ବା, ଅଣଓସାରିଆ ହୋଇ ଦୁଇ ପାଖରୁ ତଳକୁ ଗଡ଼ାଣିଆ ହୋଇ ଆସିଥାଏ ଓ ଛଅ ଫୁଟରୁ ଅଧିକ ଗଭୀର ହୋଇ ନଥାଏ, ତେବେ ଜାଲ ପକାଇ ବଡ଼ ଯାଆଁଳଙ୍କ ଗଣିନେବା ପାଇଁ ସୁବିଧା ହୁଏ । ଯାଆଁଳ ଚାରି ଛଅ ଇଞ୍ଚ ହେଲାବେଳକୁ ତାଙ୍କୁ ସାଧାରଣତଃ “ଫେଣ୍ଟା” ବୋଲି କହନ୍ତି । ପୁରୁଣା ପଙ୍କୁଆ ପୋଖରୀ ଏଇ ଉଦ୍ଦେଶ୍ୟରେ ବ୍ୟବହାର କରିବା ଠିକ୍ ନୁହେଁ ।

# ମାଛ ପୋଖରୀ

ବାରମାସୀ ପାଣି ରହୁଥିଲା ଭଳି ବଡ଼ ବନ୍ଧ ପୋଖରୀରେ "ପେଣ୍ଟା"ଗୁଡ଼ିକ ଛାଡ଼ିଦେଲେ ତେଣିକି ସେମାନେ ବଢ଼ିଲେ । ପୋଖରୀଟା କେତେ ହେବ ସେ ବିଷୟ କିଛି କହି ଲାଭ ନାହିଁ । କାରଣ ଛୋଟରୁ ବଡ଼ ସବୁ ପୋଖରୀରେ ମାଛ ଛାଡ଼ି ଆମ ଖାଦ୍ୟାଭାବ ମେଣ୍ଟାଇବା ଉଚିତ । କିନ୍ତୁ ଯଦି ନୂଆ ପୋଖରୀ ଖୋଳି ମାଛଚାଷ କରିବାର କେହି ଯୋଜନା କରେ ତା'ହେଲେ ମାଛ ଯେମିତି ବେଶି ବାଟ ବୁଲି ଭଲ ଖେଳି ପାରିବେ ଓ ଜାଲ ପକାଇବାକୁ ସୁବିଧା ହେବ—ଏଇ ଦୁଇଟି କଥା ମନେ ରଖିଥିବା ଉଚିତ ।

ଭିନ୍ନ ଭିନ୍ନ ଅବସ୍ଥାରେ ଯାଆଁଳ ଓ "ପେଣ୍ଟା"ଗୁଡ଼ିକୁ ଭିନ୍ନ ଭିନ୍ନ ପୋଖରୀରେ ପାଳି ବଡ଼ ମାଛ ପୋଖରୀରେ ଛାଡ଼ିବାର ଉଦ୍ଦେଶ୍ୟ ହେଉଛି—ଏକ ବୟସର ମାଛ ନିରାପଦରେ ବଢ଼ିବାର ଓ ଖେଳିବାର ସୁବିଧା ପାଇବେ, ଯଥେଷ୍ଟ ଖେଳାବୁଲା କଲେ ଭଲ ବ୍ୟାୟାମ ହେବ । ପରୀକ୍ଷା କରି ଦେଖାଯାଇଛି ଯେ ପ୍ରତିଥର ପୋଖରୀ ବଦଳାଇଲା ପରେ ମାଛ ବେଶି ତେଜା ହୋଇ ଯାଆନ୍ତି, ଭଲ ଖେଳନ୍ତି ଓ ବଢ଼ନ୍ତି । ଆଉ ଗୋଟିଏ ସୁବିଧା ହୁଏ—ମାଛଙ୍କୁ ଯଦି କୌଣସି ରୋଗ ଧରୁଥାଏ ତେବେ ଜଣା ପଡ଼ିଯାଏ ଓ ତାର ପ୍ରତିକାର କରିହୁଏ ।

---

# ଯାଆଁଳଙ୍କ ଯତ୍ନ

ନର୍ଭ୍ ସୁଅରେ ଅସଂଖ୍ୟ ଯାଆଁଳ ଭାସି ଆସୁଥିବାରୁ ମାଛ ଚାଷପାଇଁ "ବନ୍ଧନ"ର ଅଭାବ ଜଣାପଡ଼େ ନାହିଁ । ସେଗୁଡ଼ିକ ଏତେ ସୂକ୍ଷ୍ମ ଓ କ୍ଷୁଦ୍ର ହୋଇଥାଆନ୍ତି ଯେ ଯେତେ ସାବଧାନ ହେଲେ ମଧ୍ୟ ନଈରୁ ଆଣି ପୋଖରୀରେ ଛାଡ଼ିଲାବେଳକୁ ହଜାର ହଜାର ମରି ସାରି ଥାଆନ୍ତି । ଯୋଉଁ ଦୁଇଟି ବିଷୟରେ ଠିକଏ ସାବଧାନ ହେଲେ ଏମାନଙ୍କର ମୃତ୍ୟୁ ସଂଖ୍ୟା ବେଶ୍ କମେଇ ଦେଇ ହେବ ।

ଅଣ୍ଡାରୁ ବାହାରିଲାବେଳକୁ ଯାଆଁଳ କଣ ଖାଇବେ ସେ କଥା ଚିନ୍ତା କରିବା ଦରକାର ନାହିଁ । ଅଳ୍ପ କେତେଦିନ ପର୍ଯ୍ୟନ୍ତ ସେ ଅଣ୍ଡା ଦେହରୁ ତାର ଦରକାର ମୁତାବକ ଖାଦ୍ୟ ନେଇ ଆସିଥାଏ । ସେଥିପାଇଁ ଅବସ୍ଥାରେ କ୍ଷୁଦ୍ର ଯାଆଁଳଙ୍କ ମଳମୂତ୍ର ମଧ୍ୟ ବାହାରେ ନାହିଁ । ଫଳରେ ତାକୁ ଯେଉଁ ବାଲଟି ବା ହାଣ୍ଡିରେ ବନ୍ଦ କରାଯାଏ ସେ ହାଣ୍ଡି ବାଲଟିର ପାଣିରେ ଗୁହ ମୁତ ମିଶି ଅପରିଷ୍କାର ହୋଇ ଯିବାର କୌଣସି ଭୟ ନ ଥାଏ । ସେମାନଙ୍କ ପାଇଁ ଦରକାର କେବଳ ଅମ୍ଳଜାନ । ପାଣିକୁ ମଝିରେ ମଝିରେ ହାତରେ ଚହଲାଇ ଦେଇ ବା ବଦଳାଇ ଦେଇ ଦରକାର ମୁତାବକ ଅମ୍ଳଜାନ ଯୋଗାଇ ଦେଉଥିଲେ ସେମାନେ ନିଶ୍ଚିନ୍ତରେ ରହିବେ । ସେଗୁଡ଼ିକ ଏତେ କ୍ଷୁଦ୍ର ଯେ, ଜଣେ ଲୋକ ଘର କରି ଲକ୍ଷ ଲକ୍ଷ ଯାଆଁଳ ପାଣିହାଣ୍ଡିରେ ବନ୍ଦି ନେଇପାରେ ।

ଯାଆଁଳ ଧରିଲାବେଳେ ଅଳଆ ମିଶା କରି ହାଣ୍ଡି ବା ବାଲଟି ଭିତରେ କେବଳ ସମସ୍ତ ରଖିଦେଲେ ମାଛ ଅଣନିଶ୍ୱାସୀ

ହୋଇ ଯାଆନ୍ତି ଓ କାଠିକୁଟାରେ ବାଜ ଖଣ୍ଡିଆ ହୋଇଯାଆନ୍ତି । ତେଣୁ ଯାଆଁଳ ହାଣ୍ଡିରେ କୁଟା ପତ୍ର ଓ ଅଳିଆ ଯେପରି ନ ରହେ ସେଥିପ୍ରତି ବିଶେଷ ଦୃଷ୍ଟି ଦେବା ଦରକାର ।

ଗୁଡ଼ାଏ ଯାଆଁଳ ଗୋଟିଏ ହାଣ୍ଡିରେ ରଖିବା ଫଳରେ ଅର୍ଥାତ୍ ଅଳ୍ପ ପାଣିରେ ବେଶିଗୁଡ଼ାଏ ଯାଆଁଳ ରହିଗଲେ କ'ଣ ହୁଏ ବିଚାର କରାଯାଉ । ନିଶ୍ୱାସ ନେଲାବେଳେ ସେମାନେ ପାଣିରୁ ଅମ୍ଳଜାନତକ ନେଇ ଯାଆନ୍ତି ଓ ନିଶ୍ୱାସ ଛାଡ଼ିଲାବେଳେ ଅଙ୍ଗାରକାମ୍ଳ ବାଷ୍ପ ତକ ପାଣିରେ ଛାଡ଼ି ଦିଅନ୍ତି । ଫଳରେ ପାଣିରୁ ଅମ୍ଳଜାନ ଶୀଘ୍ର ଶୀଘ୍ର ସରି ଯାଉଥାଏ, ଅଙ୍ଗାରକାମ୍ଳ ବାଷ୍ପ ବେଶି ବେଶି ଜମି ଯାଉଥାଏ । ଏଭଳି ଅବସ୍ଥା ହେଲେ ଯାଆଁଳତକ ମରିଯିବାର ହିଁ କଥା ।

ଗୋଟାଏ ହାଣ୍ଡିରେ କେତେ ଯାଆଁଳ ରହିବେ କହି ହେବ ନାହିଁ ବା ଗଣି କରି କେହି ଛାଡ଼ି ପାରିବେ ନାହିଁ । କିନ୍ତୁ ଯଦି ଦେଖିଲ ଯେ ଯାଆଁଳଗୁଡ଼ିକ ହାଣ୍ଡିତଳେ ପାଣି ଭିତରେ ନ ଖେଳି ଖାଲି ଉପରେ ଆସି ସାଲୁ ସାଲୁ ହେଉଛନ୍ତି ତେବେ ନିଶ୍ଚିତ ଭାବରେ ଜଣା ପଡ଼ିଲା ଯେ ପାଣିରୁ ଅମ୍ଳଜାନ କମି ଆସିଲା ଓ ଅଙ୍ଗାରକାମ୍ଳବାଷ୍ପ ଜମିଗଲା । ଏ କଥା ଜଣା ପଡ଼ିଲା ପରେ ପାଣି ବଦଳାଇ ଦେବା ହେଲା ଏକମାତ୍ର ବାଟ । ଏ କାମ କରିବାର ସହଜ ଉପାୟ ହେଉଛି ଖଣ୍ଡେ କପଡ଼ା ହାଣ୍ଡି ମୁହଁରେ ବାନ୍ଧିଦେଇ ପାଣି ଭିତରକୁ ଅଧା ପର୍ଯ୍ୟନ୍ତ ବୁଡ଼ାଇ ଦେବ । ଯାଆଁଳତକ ତଳେ ରହିଯିବେ—ଉପରକୁ ପାଣି ଉଠି ଆସିଲା । ଗୋଟାଏ ଡାଡିଆ ବା ସଢ଼େଇରେ ପାଣି ତକ କାଢ଼ି ବାହାର କରିଦେବ ଓ ବାହାରୁ ନୂଆପାଣି ଭର୍ତ୍ତି କରିଦେବ । ଏହି ଉପାୟ କଲେ

ଯାଆଁଳ୍ମାନଙ୍କ ହାତ ବାଜିବ ନାହିଁ କି ତାଙ୍କର କୌଣସି କ୍ଷତି ହେବ ନାହିଁ । ପୂର୍ବରୁ କୁହାଯାଇଛି ଅତି ଶ୍ରେଷ୍ଠ, ନିକୃଷ୍ଟ ଯାଆଁଳ ଗୁଡ଼ିକ ଏତେ ନର୍ମ୍ମବା ହୋଇ ଥାଆନ୍ତି ଯେ ଧରିବା ଓ ରଖିବା ବେଳେ ପ୍ରେଶିକ ହଲଚଲ୍ଲ ଇତ୍ୟାଦି ହୁଏ ସେଥିରେ କେତେ କେତେ ମରିଯାଆନ୍ତି ।

## ପାଣିର ତାପ ଓ ଯାଆଁଳ

ନଈରୁ ଧରି ଆଣି ଯାଆଁଳଙ୍କୁ ଅନୁକୂଳ ଗଡ଼ିଆ ବା ଅନ୍ୟ କୌଣସି ପାତ୍ରରେ ରଖିଲାବେଳେ ଆଉ ଗୋଟିଏ କଥା ପ୍ରତି ଦୃଷ୍ଟି ଦେବାକୁ ହେବ । ସବୁ ପାଣିର ତାପ ସମାନ ନୁହେଁ । ନଈ ପାଣି ବେଶ୍ ଥଣ୍ଡା ଥାଏ—ଏଣେ ଖରାପଡ଼ ଅନୁକୂଳ ଗଡ଼ିଆ ପାଣି ଟିକିଏ ଉଷୁମ ହୋଇଯାଇଛି । ଥଣ୍ଡା ପାଣିରୁ ଆଣି ହଠାତ୍ ଅପେକ୍ଷାକୃତ ଉଷୁମ ପାଣିରେ ଛାଡ଼ିଦେଲେ ସେମାନଙ୍କୁ ଆଞ୍ଚ ଲାଗିବ, ଦୁର୍ବଳ ହୋଇଯିବେ ଓ ପରେ ମରି ଯିବାର ଆଶଙ୍କା ରହିଛି । ଯାଆଁଳ ଅଣାଥିବା ନଈପାଣି ଓ ରହିବା ଗଡ଼ିଆ ବା ହାଣ୍ଡି ପାଣି—ଏହି ଦୁଇ ପାଣିକୁ ହଠାତ୍ ମିଶାଇ ନ ଦେଇ ଆସ୍ତେ ଆସ୍ତେ ସାବଧାନ ହୋଇ ମିଶାଇଲେ ଯାଆଁଳଙ୍କ ଉପରକୁ ବିପଦ କମ । ନାନା ଉପାୟରେ ଏହି କାମ କରାଯାଇ ପାରେ । ବଡ଼ ହାଣ୍ଡିରେ ଯାଆଁଳଙ୍କୁ ଦୂରସ୍ଥାନକୁ ବହି ନିଅନ୍ତି । ସେ ହାଣ୍ଡିରେ ପାଣି ଭର୍ତ୍ତି କରି ଗଛ ଛାଇ ଭଳି ଥଣ୍ଡା ଜାଗାରେ ରଖିଲେ ଚଳିବ । ଯଦି ସଙ୍ଗେ ସଙ୍ଗେ ଗୋଟାଏ ଅନୁକୂଳ ଗଡ଼ିଆରେ ଛାଡ଼ିବାକୁ ସ୍ଥିର ହୋଇଥାଏ, ସେ ଗଡ଼ିଆ ଉପରେ ଘୁମୁଡ଼ିଆ ବାନ୍ଧିଦେଇ ପାଣିଟାକୁ ଥଣ୍ଡା ରଖା ଯାଇପାରେ ।

# ଚଲ୍‌ପାଣି ଓ ଯାଆଁଳ

ଦୂର ଦୂରାନ୍ତକୁ ବହିନେଲା ବେଳେ ଆଉ ଗୋଟିଏ ଅସୁବିଧା ହୁଏ । ଚଲ୍ ପାଣିଟା ଯାଆଁଳଙ୍କ ପକ୍ଷେ ଖୁବ୍ ଉପକାରୀ । ବାଟରେ ପାଣି ବଦଳାଇଲା ବେଳେ ବା ଅନ୍ୟବେଳେ ଯଦି ଥିର-ପାଣିରେ ରହିଲେ ତେବେ ତାଙ୍କୁ ରୋଗ ଜୀବାଣୁ ଆକ୍ରମଣ କରିବାର ଆଶଙ୍କା ଥାଏ । ତେଣୁ ବରାବର ଦେଖିବାକୁ ହେବ ଯେପରି ଚଲପାଣି ଆଣି ହାଣ୍ଡିରେ ଭର୍ତ୍ତି କରାଯିବ । କିନ୍ତୁ ଯଦି ତା' ସମ୍ଭବ ନ ହୁଏ, ତେବେ ଥିର ପାଣିରେ ଟିକିଏ ଲୁଣ ପକାଇ ଦେଲେ ଯାଆଁଳଙ୍କୁ ରୋଗ ଜୀବାଣୁ ଆକ୍ରମଣ କରି ପାରିବେ ନାହିଁ । ଅତି ସାମାନ୍ୟ ପରିମାଣରେ ଲୁଣ ପଡ଼ିବ । ହାଣ୍ଡିଏ ପାଣିରେ ଦୁଇ ଚାରି ଚିମୁଟା ଲୁଣ ପକାଇ ଦେଲେ ଚଳିବ । ଶତକଡ଼ା ୦·୧ ଭାଗ ଅର୍ଥାତ୍ ପାଣି ଯେତିକି ତାର ହଜାର ଭାଗରୁ ଭାଗେ ଲୁଣ ଦିଆଗଲେ ଉଦ୍ଦେଶ୍ୟ ପୂରଣ ହୋଇଯିବ ।

# ଯାଆଁଳ ବୁହା ଓ ଅମ୍ଳଜାନ

ଯାଆଁଳଙ୍କୁ ଦୂର ସ୍ଥାନକୁ ବହି ନେଲାବେଳେ ସେମାନେ ପାଣିରୁ ଯଥେଷ୍ଟ ଅମ୍ଳଜାନ ପାଇଲେ କି ନାହିଁ ସେତକ ଦେଖିବା ହେଲା ବଡ଼କାମ । କେତେକ କ୍ଷେତ୍ରରେ ବନ୍ଦ ଟିଣରେ ବହୁଦୂରକୁ ପଠାଇବାକୁ ପଡ଼େ । ଅଳ୍ପ ଦୂରକୁ ମଧ୍ୟ କୌଣସି କାରଣରୁ ବନ୍ଦ ଟିଣରେ ପଠାଇବା ଦରକାର ପଡ଼ିପାରେ । ସେ କ୍ଷେତ୍ରରେ ଟିଣ ଭିତରେ ଥିବା ପାଣି କାହାରେ ବଦଳାଯାଇ ପାରେ ନାହିଁ କି ପବନରୁ ଅମ୍ଳଜାନ ସେଥିରେ ମିଶିପାରେ ନାହିଁ । ତେଣୁ ବନ୍ଦ

ଟିଣରେ, କେତେ ପାଣିରେ କେତେ ଆକାରର କେତେ ସଂଖ୍ୟକ ଯାଆଁଳ କେତେ ସମୟ ପର୍ଯ୍ୟନ୍ତ ନିରାପଦରେ ରହିଯାଇ ପାରିବେ —ଅମ୍ଳଜାନ ଅଭାବରେ ମରିଯିବେ ନାହିଁ, ତାର ହିସାବ ବିଶେଷଜ୍ଞମାନେ ଦେଇଛନ୍ତି । ବର୍ଷାଦିନେ ସାଧାରଣତଃ ଯାହା ତାପ ଥାଏ ସେଥିରେ ଯାଆଁଳଗୁଡ଼ିକ ଖୁବ ବେଶି ଅମ୍ଳଜାନ ଦରକାର କରନ୍ତି ନାହିଁ । ସେସବୁ ହିସାବ ଆମର ବିଶେଷ କିଛି କାମରେ ଆସିବ ନାହିଁ ବୋଲି ବହିର ଏଠାରେ ତାହା ଦିଆଗଲା ନାହିଁ ।

ଆମର ଏଠି ସାଧାରଣତଃ କେବଳ ବନ୍ଦ ଟିଣ ବା ହାଣ୍ଡିରେ ଯାଆଁଳ ବହି ନେଇ ଯାଏ ନାହିଁ—ଆମେ ବହି ନେଇ ଯାଉ ଖୋଲା ହାଣ୍ଡିରେ । ଖୋଲା ହାଣ୍ଡିରେ ଧରି କରି ନେଉ ବା ରେଳ ମଟରରେ ନେଲେ—ପାଣି ବରାବର ଚହଲୁଥାଏ । ପାଣି ଚହଲିଲେ ଓ ହାଣ୍ଡି ମୁହଁ ଖୋଲାଥିଲେ ପବନରୁ ଅମ୍ଳଜାନ ପାଣି ଦେହରେ ମିଶି ଯାଏ । ଏହା ସାଙ୍ଗକୁ ମଝିରେ ମଝିରେ ପାଣି ବଦଳାଇ ଦିଆଯାଉ ଥାଏ ଓ ପାଣିକୁ ହଲ କରି ଚହଲାଇବା ପାଇଁ ମଝିରେ ମଝିରେ ହାତରେ ଚବ୍ ଚବ୍ କରି ଦିଆଯାଉଥାଏ । ଏତେ ସାବଧାନତା ଓ ସୁବିଧା ସତ୍ତ୍ୱେ ଖୋଲା ହାଣ୍ଡିରେ କେତେ ପାଣିରେ, କେତେ ଲମ୍ବର, କେତେ ଯାଆଁଳ, କେତେ ସମୟ ପର୍ଯ୍ୟନ୍ତ ରହି ବୁହାହେଲେ କେତେ ପର୍ଯ୍ୟନ୍ତ ମରିଯିବେ ତା'ର ଏକ ହିସାବ ଏଠି ଦିଆଗଲା । ହାଣ୍ଡିରେ ପ୍ରାୟ ଅଠର, କୋଡ଼ିଏ ସେର ପାଣି ରହିବ ବୋଲି ଧରି ହିସାବ ଦିଆଗଲା :—

| ପୋଆଁଳ ଲମ୍ବ | ହାଣ୍ଡିରେ ସଂଖ୍ୟା | ବୁହାହେବା ସମୟ | ଶତକଡ଼ା କେତେ ମରିବେ |
|---|---|---|---|
| ଅଧ ଇଞ୍ଚରୁ ତିନପା | ୧୬୦୦ | ୨୪ ଘଣ୍ଟା | ୨ରୁ ୫ |
| ,, | ୧୨୦୦ | ୩୬ ଘଣ୍ଟା | ,, |
| ତିନପାରୁ ଏକଇଞ୍ଚ | ୧୦୦୦ | ୨୦ ଘଣ୍ଟା | ,, |
| ,, | ୮୦୦ | ୩୦ ଘଣ୍ଟା | ,, |
| ୧ରୁ ୨ ଇଞ୍ଚ | ୫୦୦ରୁ ୮୦୦ | ୨୪ ଘଣ୍ଟା | ୧୦ |
| ୨ରୁ ୩ ଇଞ୍ଚ | ୨୦୦ | ୮ ଘଣ୍ଟା | ୧୦ |

ଏହି ହିସାବ ଅନୁସାରେ ବହି ନେଉଥିଲାବେଳେ ମଧ୍ୟ ଯଦି ଦେଖିଲ ଯେ ପୋଆଁଳ ଗୁଡ଼ାକ ଅଣନିଶ୍ୱାସୀ ହୋଇଗଲେ ଭଳି ହୋଇ ପାଣି ଉପରକୁ ଉଠି ଆସି ଜୋରରେ ପାଟି ଫାକୁ ଫାକୁ କରୁଛନ୍ତି ତାହାହେଲେ ବୁଝିବାକୁ ହେବ—ପାଣିରେ ଯେତିକି ଅମ୍ଳଜାନ ରହିବା ନିତାନ୍ତ ଦରକାର ସେଥିରୁ କମି ଗଲା । ସଙ୍ଗେ ସଙ୍ଗେ ପାଣି ବଦଳାଇ ନୂଆ ପାଣି ଦେଇ ଦେବା ଛଡ଼ା ଅନ୍ୟ ଉପାୟ ନାହିଁ । କ୍ଲୋରିନ ମିଶା ପାଣି ମାଛର କ୍ଷତି କରେ ବୋଲି ପରୀକ୍ଷା କରି ଜଣା ଯାଇଛି ।

ବହି ନେଇ ଯାଉଥିଲାବେଳେ ବାଟରେ ମରି ଯାଇଥିବା ପୋଆଁଳଗୁଡ଼ିକ ଯଦି ମଝିରେ ମଝିରେ କାଢ଼ି ନ ଢକାଯାଏ ସେ ଗୁଡ଼ିକ ପଚି ପାଣିକୁ ଦୂଷିତ କରି ପକାଇବେ ଓ ଅନ୍ୟ ମାଛଙ୍କର କ୍ଷତି ହେବ । ଯେଉଁ ପୋଆଁଳକୁ ରୋଗ ଜୀବାଣୁ ଆକ୍ରମଣ କରନ୍ତି ସେଇଠାର ଜୋର କମି ଥିବାରୁ ଦୁର୍ବଳଆ ହୋଇ ପହଁରୁଥିବ ଓ ତା ପକ୍ଷୀ ଧଳାଆଁଶିଆ ଦେଖା ଯାଉଥିବ ।

ତାକୁ କାଢ଼ି ନ ପକାଇଲେ ଅନ୍ୟ ଯାଆଁଳଙ୍କୁ ରୋଗ ଜୀବାଣୁ ଆକ୍ରମଣ କରିବାର ଭୟ ଅଛି ।

ମାଟି ହାଣ୍ଡିରେ ଯାଆଁଳ ବହିନେବା ସବୁଠୁଁ ଭଲ । ପିତଳ, ସିଲଭର ହାଣ୍ଡି ବା ବାଲଟିରେ ବେଶି ଦୂର ନେଲେ ଖରାରେ ସେଗୁଡ଼ିକ ଶୀଘ୍ର ତାତି ଯାଏ ଓ ଭିତର ପାଣି ଉଷୁମ ହୋଇ ଯାଏ । ଯଦି ସେଥିରେ ନେବାର କଥା ହୁଏ ତା ଉପରେ ଖଣ୍ଡେ ଓଦା ବା ମୋଟା କନା ବାନ୍ଧି ଦେଇ ମଝିରେ ମଝିରେ ତା ଉପରେ ପାଣି ଛିଞ୍ଚି ଦେଉଥିଲେ ବେଶ୍ ଥଣ୍ଡା ରହେ ଓ ଭିତର ପାଣି ଉଷୁମ ହୁଏ ନାହିଁ ।

ଏକ ମହୁଆ ବା ଏକା ସାଇଜର ଯାଆଁଳ ଗୋଟିଏ ଗୋଟିଏ ହାଣ୍ଡିରେ ନେଲେ ଭଲ । ବଡ଼ ଓ ସାନ ଯାଆଁଳ ଏକା ହାଣ୍ଡିରେ ନେଲେ ସାନଗୁଡ଼ିକ ମରିଯିବାର କାରଣ ଘଟି ପାରେ । ତେଣୁ ଦୂରକୁ ପଠାଇଲାବେଳେ ଯେତେ ଦୂର ସମ୍ଭବ ବାଛି ଦେଇ ଭିନ୍ନ ଭିନ୍ନ ସାଇଜର ଯାଆଁଳ ଭିନ୍ନ ଭିନ୍ନ ହାଣ୍ଡିରେ ନିଅ । ଅଜାତିଆ ବା ମାଛଖିଆ ମାଛଙ୍କ ଯାଆଁଳ ଏତିକିବେଳେ ବାଛି ହୋଇଯିବେ, ସେଗୁଡ଼ିକ ବାଦ ଦେଇ ହେବ ।

ଆଜିକାଲି ଉଡ଼ାଜାହାଜରେ ଯାଆଁଳ ପଠାଇ ଦିଆ ହେଉଛି । ମୁଦା ଟିଣରେ ଯଥେଷ୍ଟ ଅମ୍ଳଜାନ ଓ ପାଣି ବ୍ୟବସ୍ଥା କରି ଦେଇ ଓ ଦରକାର ମୁତାବକ ଅମ୍ଳଜାନ ଓ ପାଣି ଦେବା ପାଇଁ ଟିଉବ ବା ନଳୀ ଖଞ୍ଜି ବହୁ ଦୂରକୁ ଅଳ୍ପ ସମୟରେ ଯାଆଁଳ ପଠାଇ ଦିଆ ହେଉଛି । ଏହି ଉପାୟରେ ଶହ ଶହ ମାଇଲ ଦୂରରୁ ଯାଆଁଳ ବା "ବହନ ମାଛ" ଆଣି ମାଛ ଚାଷ କରାଯାଇପାରେ ।

ହାଣ୍ଡିରେ ମାଆଁଳଙ୍କୁ ନେଇ 'ଅନୁଡ଼ ଗଡ଼ିଆ'ରେ ଛାଡ଼ିଲାବେଳେ ଆଉ ଗୋଟିଏ ବିଷୟରେ ସାବଧାନ ହେବା ଭଲ। ଯଦି ଦେଖାଗଲା ଯେ ଗଡ଼ିଆ ପାଣି ଓ ହାଣ୍ଡି ପାଣି ଭିତରୁ କୋଟିକର ତାପ ଅନ୍ୟଠିଁ ବେଶି ବା କମ—ବା ଅର୍ଥାତ୍ ଗଡ଼ିଆ ପାଣି ଉଷୁମ୍ କିଆ ଓ ହାଣ୍ଡି ପାଣି ଥଣ୍ଡା ଠିକ୍ ଓଲଟା—ତେବେ ମାଆଁଳଙ୍କୁ ସିଧା ସଳଖ ଗଡ଼ିଆରେ ଛାଡ଼ିଦେଲେ ଟିକିଏ ବିପଦ ଅଛି। ସେ କ୍ଷେତ୍ରରେ ହାଣ୍ଡିଟିକୁ ଗଡ଼ିଆ ପାଣିରେ ପ୍ରାୟ ଅଧ ଘଣ୍ଟାଏ ପର୍ଯ୍ୟନ୍ତ ସ୍ଥିର କରି ବୁଡ଼େଇ ରଖିବ, ମଝିରେ ମଝିରେ ଗଡ଼ିଆ ପାଣିରୁ କିଛି ଆଣି ହାଣ୍ଡି ଭିତରେ ଛିଞ୍ଚି ଦେଉଥିବ। ଏହିପରି କଲେ ଦୁଇ ପାଣିର ତାପ ସମାନ ହୋଇଯିବ ଓ ତା'ପରେ ହାଣ୍ଡିଟିକୁ ବୁଡ଼ାଇ ଢାଳିଦେଲେ ମାଆଁଳଙ୍କୁ ଗଡ଼ିଆ ପାଣିକୁ ଚାଲି ଯିବେ।

ଅନୁଡ଼ ଗଡ଼ିଆରେ ମାଆଁଳଙ୍କୁ ପହଞ୍ଚିଲା ବେଳକୁ ସେମାନଙ୍କ ପାଇଁ ସେଥିରେ ଯଦି ଯଥେଷ୍ଟ ଖାଦ୍ୟ ନ ଥାଏ ତେବେ ସେମାନେ ଆଶାନୁରୂପ ବଢ଼ି ପାରିବେ ନାହିଁ ଓ ହୁଏତ ଅନେକଗୁଡ଼ାଏ ମରିଯିବେ। ଆଗରୁ ସେ ପୋଖରୀରେ ମାଆଁଳ ଖାଦ୍ୟ ସାଇତି ରଖିଲା ଭଳି କିପରି ରଖାଯିବ ସେ ବିଷୟ ଅନ୍ୟତ୍ର ଦିଆଯାଇଛି।

## ମାଆଁଳଙ୍କ 'ସ୍ୱଜାତି ଭକ୍ଷଣ' ଅଭ୍ୟାସ

ଅନୁଡ଼ ଗଡ଼ିଆରେ ଭକୁର ଶ୍ରେଣୀ ମିରିକାଳି ମାଆଁଳ ଛାଡ଼ିଲାବେଳେ ଭୁଲରେ ଯଦି ବାଳିଆ ତଳ ମାଆଁଳ ମିଶି ଚାଲିଗଲେ ତେବେ ସେମାନେ ତ ଭକୁର ମାଆଁଳଙ୍କ ଭିତରୁ

କାଟି କାଟି ଖାଇଯିବେ । ସେ ବିଷୟରେ ଖୁବ ସାବଧାନ ହୋଇ ଅଳତିଆ ଯାଆଁଳଙ୍କୁ ବାଛି ପକାଇ ଦେବ, କିନ୍ତୁ ଅଡୁଆ ହେବ ଗୋଟିଏ କଥାରେ । ଭାକୁର ଗୋଷ୍ଠୀ ଭୁକ୍ତ ଜାତିଆ ମାଛଯାଆଁଳଙ୍କର ସ୍ୱଜାତି ଭକ୍ଷଣ ଅଭ୍ୟାସ ମଧ୍ୟ ଅଛି । ବଡ଼ ଗୁଡ଼ାକ ସାନ ଗୁଡ଼ାକୁଁ ସମୟେ ସମୟେ ତ ଖାଇ ଯାଆନ୍ତି । ଅନୁଡ଼ି ଗଡ଼ିଆରେ ଛଡ଼ା ହୋଇଥିବା ଯାଆଁଳ ଟିକଏ ବଡ଼ ବଡ଼ ହୋଇଗଲା ପରେ ତାଙ୍କଠୁଁ ଶ୍ରେଷ୍ଠ ଅନ୍ୟ ଯାଆଁଳ ଆଣି ଛାଡ଼ିଦେଲେ ଏହି ବିପଦ ରହିଛି । ତେଣୁ ସବୁଠୁଁ ଭଲ ହେଉଛି ଏକ ମଣ୍ଟିଆ ଯାଆଁଳ ଗୋଟିଏ ଗୋଟିଏ ଅନୁଡ଼ି ଗଡ଼ିଆରେ ଛାଡ଼ିବା । ଯଦି ତା ନ ହୋଇ ପାରିଲା ତେବେ ପ୍ରଥମଥର ଯାଆଁଳ ଛାଡ଼ିବାର ବାର ଚଉଦ ଦିନ ପରେ ସେଗୁଡ଼ିକ ଛାଣିନେଇ ଅନ୍ୟ ଯାଆଁଳ ଛାଡ଼ି ଦିଅ ।

## ବେଶି ଅମ୍ଳଜାନରେ ବିପଦ

ଅନୁଡ଼ି ପିଲଟିକୁ ପାଳିବାର ଯେତିକି ସାବଧାନତା ଲୋଡ଼ା ଅନୁଡ଼ି ଗଡ଼ିଆରେ ଟିକି ଟିକି ଯାଆଁଳ ବଢ଼ାଇବାରେ ମଧ୍ୟ ସେତିକି ସାବଧାନତା ଲୋଡ଼ା କରିଲେ ବିଶେଷ ଅସୁବିଧା ହେବ ନାହିଁ । ପାଣିରେ ଉପଯୁକ୍ତ ପରିମାଣରେ ଅମ୍ଳଜାନ ନ ଥିଲେ ମାଛ ଓ ଯାଆଁଳ ସମସ୍ତଙ୍କର କ୍ଷତି । ଅତ୍ୟଧିକ ପରିମାଣରେ ଅମ୍ଳଜାନ ଯଦି 'ଅନୁଡ଼ି ଗଡ଼ିଆ' ପାଣିରେ ରହିଗଲା ତେବେ ଯାଆଁଳ ମରିଯିବେ । କୌଣସି କୌଣସି ଗଡ଼ିଆରେ ଅତି ସୂକ୍ଷ୍ମ ଉଦ୍ଭିଦ ( algae ) ଗୁଡ଼ାକ ଖୁବ ଶୀଘ୍ର ଶୀଘ୍ର ବଢ଼ିଯାଇ ପାଣିକୁ ଶାଗୁଆ କରି ଦେଇଥାନ୍ତି । ଯେଉଁ ଦିନମାନଙ୍କରେ ବେଶି ଟାଣ ଖରା ହୁଏ, ସେ ଦିନ ଏହି

ସୂକ୍ଷ୍ମ ଉଦ୍ଭିଦଗୁଡ଼ିକ ପାଣିରୁ ଅଙ୍ଗାରକାମ୍ଳ ବାଷ୍ପ ଶୀଘ୍ର ଶୀଘ୍ର ଖର୍ଚ୍ଚ କରି ପକାନ୍ତି ଓ ଯଥେଷ୍ଟ ଅମ୍ଳଜାନ ପାଣି ଭିତରକୁ ଛାଡ଼ି ଦିଅନ୍ତି । ଅମ୍ଳଜାନ ମାତ୍ରା ବେଶି ହୋଇଗଲେ ଯାଆଁଳ ପେଟ ଓ ଦେହର ଅନ୍ୟ ଅଂଶରେ 'ପବନ ଫୁଟକା' ଜମି ଯାଏ ଓ ପେଟ ଫାଟି ଯାଆଁଳ ମରିଯାଏ । ତେଣୁ ଯେଉଁ ଅନୁଡ଼ି ପୋଖରୀ ପାଣି ବେଶି ଶାଗୁଆ ସେଥିରେ ଅତି ଛୋଟ ଯାଆଁଳ ଛାଡ଼ିବା ମୋଟେ ନିରାପଦ ନୁହେଁ । ବଡ଼ ଯାଆଁଳ ଛାଡ଼ିଲେ କିଛି କ୍ଷତି ନାହିଁ, ଏ ଭଳି ପୋଖରୀରେ ସେମାନେ ଭଲ ବଢ଼ନ୍ତି । ଏହି ଯେଉଁ ସୂକ୍ଷ୍ମ ଉଦ୍ଭିଦ କଥା କୁହାଗଲା ସେଗୁଡ଼ିକ ବଡ଼ ହେଲେ, ଭକୁରଙ୍କର ଖାଦ୍ୟ ସତ—ଅତି ଛୋଟ ଯାଆଁଳ ସେଗୁଡ଼ିକ ଖାଇବାକୁ ଭଲ ପାଆନ୍ତି ନାହିଁ । ତେଣୁ ଶାଗୁଆ ପାଣି ପୋଖରୀରୁ ଛୋଟ ଯାଆଁଳ ବେଶି ଖାଦ୍ୟ ପାଇବେ ବୋଲି ଭୁଲରେ ଲୋଭ କରିବାର କୌଣସି କାରଣ ନାହିଁ । ଯେଉଁ ପୋଖରୀ ତଳେ ଗୁଡ଼ାଏ ପାଣିଗଛ ରହିଛି ସେ ପୋଖରୀ ମଧ୍ୟ 'ଅନୁଡ଼ି ଗଡ଼ିଆ' ବା ବୃଦ୍ଧି ଗଡ଼ିଆ ଭାବରେ ବ୍ୟବହାର ହେବାର ଉପଯୁକ୍ତ ନୁହେଁ ।

ଉପରେ ଯେତେ ଯେତେ କଥା କୁହାଗଲା ସେଥିରୁ ଏତିକି ସ୍ପଷ୍ଟ ଭାବରେ ଜଣା ପଡ଼ିଲା ଯେ ଛୋଟ ଯାଆଁଳଙ୍କୁ ଧରି ଅନୁଡ଼ି ଗଡ଼ିଆରେ ଛାଡ଼ି ଅନ୍ତତଃ ଆଠ ଦଶ ଦିନ ପର୍ଯ୍ୟନ୍ତ ପାଳିବା ସମୟଟାରେ ସବୁ ପ୍ରକାର ଯତ୍ନ ନ ନେଲେ ବହୁ ସଂଖ୍ୟକ ଯାଆଁଳ ମରିଯିବେ ଓ 'ବଢ଼ନ' ଅଭାବରୁ ମାଛ ଚାଷ କେବେ ହେଲେ ଲାଭ ଜନକ ହେବ ନାହିଁ ।

---

# ପୋଖରୀ ଆକାର—ମାଛଙ୍କ ସଂଖ୍ୟା

ପୋଖରୀରେ କେତେ ମାଛ ଛଡ଼ାଗଲେ ଭଲ—ଏହି ପ୍ରଶ୍ନଟି ସାଧାରଣତଃ ସମସ୍ତଙ୍କ ମନରେ ଉଠେ । ଏ ପ୍ରଶ୍ନର ଉତ୍ତର ଦେବା ମାଛ ଚାଷ ବିଶେଷଜ୍ଞମାନଙ୍କ ପକ୍ଷରେ ମଧ୍ୟ ଏ ପର୍ଯ୍ୟନ୍ତ ସହଜ ହୋଇ ନାହିଁ । ସେମାନେ କହୁଛନ୍ତି ଯେ ସେ ଦୃଷ୍ଟିରୁ ପରୀକ୍ଷା କରି ଗୋଟାଏ ସିଦ୍ଧାନ୍ତରେ ପହଞ୍ଚିଲା ଭଳି ଅବସ୍ଥାକୁ ଭାରତର ମାଛ ଚାଷ ବିଶେଷଜ୍ଞମାନେ ଆସି ନାହାନ୍ତି ।

ଭିନ୍ନ ଭିନ୍ନ ପ୍ରକାରର ମାଛ କେତେଦିନେ କେତେ ବଢ଼ିବେ, ସେମାନଙ୍କର ଭିନ୍ନ ଭିନ୍ନ ଖାଦ୍ୟ ଖାଇବାର ଅଭ୍ୟାସ, ପୋଖରୀରେ କେଉଁ ପ୍ରକାରର ଖାଦ୍ୟ କେତେ ଅଛି ଇତ୍ୟାଦି ବିଚାରକୁ ଆଣିଲା ପରେ ଯାଇ କେତେ ମାଛ ଛାଡ଼ିବା ସେ କଥା ସ୍ଥିର କରାହେବ । ଆଗରୁ ତ କୁହାଯାଇଛି କେବଳ ଭାକୁର ପାଳିଲେ ପୋଖରୀର ତଳ ଅଂଶରେ ଥିବା 'ମିରିକାଳିର ଖାଦ୍ୟ' ବୃଥା ହୋଇଗଲା । ତେଣୁ ଗୋଟାଏ ପୋଖରୀରେ କି ଅନୁପାତରେ ଭାକୁର, ରୋହି, ମିରିକାଳି ଛାଡ଼ିଲେ ପୋଖରୀରେ ଥିବା ସମସ୍ତ ଖାଦ୍ୟ କାମରେ ଲାଗିଯିବ, ତାହା ସ୍ଥିର କରିବାକୁ ହେବ । ମୋଟ ଉପରେ ପୋଖରୀରେ ଯେତେ ଜାତିର ମାଛ ରହିବେ ସେମାନେ ଯେପରି ଖାଦ୍ୟ ସଂଗ୍ରହବେଳେ ପରସ୍ପର ସହିତ ପ୍ରତିଯୋଗିତା ନ କରନ୍ତି । ନାନା ଜାତିର ଖାଦ୍ୟ ପାଣି ଭିତରେ ରହୁଛି । ଆମେ ଦେଖିବୁଁ ଭିନ୍ନ ଭିନ୍ନ ଜାତିର ମାଛ ଛାଡ଼ିଲେ ଗୋଟାଏ ଗୋଟାଏ ପ୍ରକାର ଖାଦ୍ୟକୁ ଗୋଟାଏ ଗୋଟାଏ ଜାତିର ମାଛ ଖାଇବେ ଓ ନିଜ ଭିତରେ ବୃଥାରେ କଳି ଲଗାଇବେ ନାହିଁ । 'ଦେଶକେ

ସ ଙ୍କ୍ ନଣ୍ଟିକ ଷାଙ୍କ୍' ଭଳି ଭିନ୍ନ ଭିନ୍ନ ମାଟିର ଓ ଜଳବାୟୁର ପୋଖରୀ ନିଶ୍ଚୟ ଭିନ୍ନ ଭିନ୍ନ ପ୍ରକାରର ହେବ । ତେଣୁ କେଉଁ ପୋଖରୀରେ କେତେ ସଂଖ୍ୟାର ମାଛ ପାଳି ହେବ ଏ ବିଷୟରେ କୌଣସି ଧରାବନ୍ଧା ଗତ ନାହିଁ ।

ଛୋଟ ଓ ବଡ଼ ପୋଆଁଳଙ୍କୁ ଉଠାଇବା ପାଇଁ ଯେଉଁସବୁ ପୋଖରୀ ଥାଏ ସେଥିରେ କେତେ ଲେଖାଁ ପୋଆଁଳ ରଖିଲେ ସୁବିଧା ହେବ ସେ ବିଷୟ ଆମେ ସମସ୍ତେ ଭଲକରି ନଜାଣିଲେ ବିଶେଷ କିଛି କ୍ଷତି ନାହିଁ ବୋଲି କହିଲେ ଚଳେ । କାରଣ ସାଧାରଣତଃ ପୋଆଁଳ ଉଠାଇବା ଓ ବଢ଼େଇବା ପୋଖରୀ ବେଶୀଭାଗ ଲୋକେ ଖୋଳନ୍ତି ନାହିଁ । ଅନ୍ୟଠୁଁ କିଣିବା ନଚେତ ଧରି ମାନ୍ଦ ପୋଖରୀରେ ପୋଆଁଳ ଛାଡ଼ି ଦିଅନ୍ତି । ଯେଉଁମାନେ ପୋଆଁଳ ଉଠାଇବେ ବା ବଢ଼ାଇବେ ସେମାନଙ୍କ ଜାଣିବା ପାଇଁ କେତେକ ତଥ୍ୟ ଅନ୍ୟତ୍ର ଦିଆଯାଇଛି । ସାଧାରଣତଃ ମାଛ ପୋଖରୀ କହିଲେ ଆମେ ଯାହା ବୁଝୁ ଅର୍ଥାତ୍ ବଡ଼ ମାଛ ରଖିବା ପୋଖରୀରେ କେତେ ସଂଖ୍ୟାରେ ମାଛ ପାଳିବା ଏ ଅଧ୍ୟାୟରେ ସେହି କଥା କୁହାଯାଉଛି ।

ପ୍ରତି ଶହେଟି ମାଛରୁ ୩୦ଟି ଭାକୁର, ୩୦ଟି ରୋହି ଓ ୪୦ଟି ମିରିକାଳି ଛାଡ଼ିଲେ ପୋଖରୀରେ ଭଲ ବଢ଼ିବେ ଓ ବେଶି ଲାଭ ହେବ ବୋଲି ବହୁତ ବଙ୍ଗଳାର ମାଛଚାଷୀମାନେ ସେହି ଅନୁପାତରେ ମାଛ ଛାଡ଼ନ୍ତି । କଟକରେ କେନ୍ଦ୍ର ସରକାରଙ୍କ ତରଫରୁ ଯେଉଁ ମତ୍ସ୍ୟଗବେଷଣା କେନ୍ଦ୍ର ଅଛି, ସେହି କେନ୍ଦ୍ର ତରଫରୁ ଗଲା ତିନି ବର୍ଷ ହେଲା ଏ ଦିଗରେ ପରୀକ୍ଷା ଚାଲିଛି । ଏ ସମ୍ପର୍କରେ ସେ କେନ୍ଦ୍ରର ଅଫିସର ମି: ଆଲିକୁନଙ୍କୁ ପଚାରିବାରୁ ସେ କହିଲେ—"ପ୍ରତିବର୍ଷ ସାତରୁ ନଅ ମାସ ପର୍ଯ୍ୟନ୍ତ

ଆମେ ମାଛ ପାଉ । ତା'ପରେ ଏହି ବର୍ଷିକିଆ ମାଛଙ୍କ ଧରି ନେଇ ହୁଏତ ବଜାରରେ ବିକିଦେଉ ବା, ଆହୁରି ବଡ଼ ପୋଖରୀରେ ଛାଡ଼ୁ । ଏକରକିଆ ପୋଖରୀରେ ପ୍ରାୟ ତିନି ହଜାର ମାଛ ରଖିଲେ ଆମେ ଭଲ ଫଳ ପାଉଛୁ । ତିନି ଜାତିର ମାଛ ରୋହି, ଭାକୁର, ମିରିକାଳି ସମାନ ସଂଖ୍ୟାରେ ଛାଡ଼ୁଛୁ । ଏହିପରି ସମାନ ସଂଖ୍ୟାରେ ଛାଡ଼ି ଆମେ ଦେଖୁଛୁ ଭାକୁର ଯେତେ ଶୀଘ୍ର ଶୀଘ୍ର ବଢ଼ୁଛି ଅନ୍ତତଃ ସେତିକି ଶୀଘ୍ର ବା ତା'ଠାରୁ ବେଶୀ ବଢ଼ୁଛନ୍ତି ରୋହି ଓ ମିରିକାଳି । ଏଥିରୁ ଜଣାପଡ଼ୁଛି ଏହି ଦୁଇ ଜାତିର ମାଛ ପୋଖରୀରେ ବେଶି ସଂଖ୍ୟାରେ ଛାଡ଼ିହେବ । ଏକରକିଆ ପୋଖରୀଟିରେ ୧୦୦୦ରୁ ବେଶୀ ଭାକୁର ରଖିଲେ ବେଶୀ ଜୋର୍‌ରେ ନବଢ଼ି ଧୀରେ ଧୀରେ ବଢ଼ନ୍ତି—ଅଥଚ ସେତିକି ସ୍ଥାନରେ ଢେରବେଶି ମିରିକାଳି ଛାଡ଼ିଲେ ସନ୍ତୋଷଜନକ ଭାବରେ ବଢ଼ିବାର ଦେଖାଯାଉଛି ।"

ଏତକ ଶୁଣାଇଲା ପରେ ସେ ପୁଣି କହିଲେ—"ଅନେକ ଦିନ ଧରି ଭିନ୍ନ ଭିନ୍ନ ପରିସ୍ଥିତିରେ ଏ ଦିଗରେ ପରୀକ୍ଷା ନ ଚଳାଇଲେ ରୋହି, ଭାକୁର, ମିରିକାଳି କି ଅନୁପାତରେ ଓ କେତେ ସଂଖ୍ୟାରେ ଛାଡ଼ିବାକୁ ହେବ ସେ ବିଷୟରେ ମାଛଚାଷୀଙ୍କୁ ଗୋଟାଏ ନିର୍ଦ୍ଦିଷ୍ଟ ହିସାବ ଦେଇ ହେବ ନାହିଁ ।" ଏହି କଥାରୁ ଆମେ ବେଶ୍ ବୁଝିପାରୁଛୁ ବିଶେଷଜ୍ଞମାନେ ବହୁ ପରିଶ୍ରମ କରି ପରୀକ୍ଷା ଚଳାଇଥିଲେ ମଧ୍ୟ ନିର୍ଭୁଲ ଭାବରେ ଗୋଟାଏ କିଛି କହିବା ପାଇଁ କୁଣ୍ଠାବୋଧ କରୁଛନ୍ତି । କିନ୍ତୁ ଯେତିକି କହୁଛନ୍ତି ସେତକ ଆମକୁ ନିଶ୍ଚୟ ସାହାଯ୍ୟ କରିବ ।

ଗୋଟାଏ ଗୋଟାଏ ପୋଖରୀରେ ଅଳ୍ପଦିନ ଭିତରେ ମାଛ ବଢ଼ି ଖୁବ୍ ବଡ଼ ବଡ଼ ହୋଇଯିବାର ଦେଖି ଆମର ଠିକିଏ ଭୁଲ

ଧାରଣା ହୋଇପାଏ । ବଡ଼ ପୋଖରୀଠାରେ ଅଳ୍ପ ସଂଖ୍ୟକ ପାଆଁଳ ଗୁଣ୍ଡିଦେଲେ ପ୍ରଚୁର ଖାଦ୍ୟପାଇ ସେମାନେ ବଢ଼ିଯାଆନ୍ତି ସିନା — କିନ୍ତୁ ପୋଖରୀଠାରୁ ମୋଟ ଆମଦାନୀ ଦେଖିଲେ ବିଶେଷ ଲାଭର କାରଣ ନଥାଏ । ଏ ବିଷୟରେ ବୋମ୍ବେ ସରକାର ଦୁଇଟି ପୋଖରୀରେ ପରୀକ୍ଷା କରି ଯେଉଁ ଫଳ ମିଳିଲା ତାହା ଜାଣିଲେ ଆମେ ବୁଝିପାରିବା ଯେ ଅଳ୍ପ ମାଛ ରହିଲେ ବେଶି ବଢ଼ିବା ନିଶ୍ଚୟ କଥା । କିନ୍ତୁ ମୋଟ ଆମଦାନୀ ଯଦି ବେଶି ନହୁଏ ତେବେ ବିଶେଷ ଲାଭହେଲା ବୋଲି କିପରି ବା କହିବା ? ଧାନ କିଆରୀରେ ଛଡ଼ା ଛଡ଼ା ହୋଇ ଅଳ୍ପ କେତେଟା ବୁଦା ଥିଲେ ବେଶ୍ କୁଆଁ ମାରି ବେଳା ନ ପାଇଲା ଭଳି ବୁଦା ହୋଇଯାଏ ସତ — କିନ୍ତୁ ମାଣକର ମୋଟ ଆମଦାନୀ ଦେଖିଲେ ବେଳକୁ କମ୍ । ମାଛ ପୋଖରୀ ପ୍ରତି ମଧ୍ୟ ସେହି ନିୟମ ଖାଟିବ ।

ବୋମ୍ବେରେ ଗୋଟିଏ ପୋଖରୀରେ (କୁର୍ଲା) ଏକର ପିଛା ପ୍ରାୟ ୪୫୦ ପାଆଁଳ ଗୁଣ୍ଡି ଦେଇଥିଲେ ଯେ ୯ ମାସ ୧୫ ଦିନ ଭିତରେ ନିମ୍ନଲିଖିତ ମତେ ମାଛ ବଢ଼ିଥିଲେ—

| ମାଛ | ଲମ୍ବ | ଓଜନ |
|---|---|---|
| ଭାକୁର | ୨୨½ ଇଞ୍ଚ | ୩୨୦ ତୋଳା |
| ରୋହି | ୧୭½ ,, | ୧୨୦ ,, |
| ମିରିକାଳି | ୧୬ ,, | ୭୦ ,, |

ଆଉ ଗୋଟିଏ ପୋଖରୀ (ବନ୍ଦ୍ରା)ରେ ଏକର ପିଛା ୨୦୦୦ ପାଆଁଳ ଗୁଣ୍ଡିବାରୁ ଏହି ଫଳ ହେଲା –

| ମାଛ | ଲମ୍ବ | ଓଜନ |
|---|---|---|
| ଭାକୁର | ୧୬ ଇଞ୍ଚ | ୧୪୦ ତୋଳା |
| ରୋହି | ୧୩½ ,, | ୭୦ ,, |
| ମିରିକାଳି | ୯½ ,, | ୩୦ ,, |

ଆମ କଟକରେ ମଧ୍ୟ ଏ ବିଷୟରେ ପରୀକ୍ଷା ହୋଇଛି । ବମ୍ବେ, କଟକ ଓ ଅନ୍ୟ ସ୍ଥାନମାନଙ୍କରେ ପରୀକ୍ଷା କଲା ପରେ ଏ କଥା କୁହା ହେଉଛି ଯେ ପ୍ରଥମ ବର୍ଷରେ ସାଧାରଣତଃ ଭାକୁର ୬୦ ତୋଳା, ରୋହି ୪୨ ତୋଳା ଓ ମିରିକାଳି ୪୦ତୋଳା ଓଜନର ହୋଇଥିବେ । ମାନ୍ଦ୍ରାଜରେ ଭାକୁର ୬ ମାସରେ ବାର ଇଞ୍ଚ; ପ୍ରଥମ ବର୍ଷରେ ୧୮ରୁ ୨୪ଇଞ୍ଚ ଓ ୨ୟ ରୁ [illegible] ବର୍ଷରେ ୩୬ରୁ ୪୨ ଇଞ୍ଚ ପର୍ଯ୍ୟନ୍ତ ବଢ଼ିଛନ୍ତି । କେବଳ ଅଢ଼େଇ ମାସରେ ଭାକୁର ବାରଇଞ୍ଚ ଲମ୍ବ (୪୫ ତୋଳା) ହୋଇଥିବାର ପ୍ରମାଣ ରହିଛି । ତୃତୀୟବର୍ଷରେ ଗୋଟାଏ ଗୋଟାଏ ମିରିକାଳି ଆଠସେର ଓଜନ ହେବାର ଦେଖା ଯାଉଛି ।

ଏକରକିଆ ପୋଖରୀଟିରୁ କେତେ ମାଛ ମରିବେ ସେ କଥା ମଧ୍ୟ କହିବା କଠିନ । ନାନା କଥା ଉପରେ ସେ ପ୍ରଶ୍ନର ଉତ୍ତର ନିର୍ଭର କରୁଛି । ଆମ ଦେଶରେ ସେହି ଆୟତନର ପୋଖରୀଟିରୁ ପ୍ରାୟ ୧୫୦୦ରୁ ୨୫୦୦ ପାଉଣ୍ଡ (ପ୍ରାୟ ୨୦ରୁ ୩୦ ମହଣ) ମାଛମରା ହେଉଛନ୍ତି । ଉତ୍ତର ପ୍ରଦେଶରେ ଏକରକିଆ ପୋଖରୀମାନଙ୍କରୁ 'ବର୍ଷିକିଆ-ଫସଲ' ୧୮୦ ରୁ ୬୪୦ ସେର ପାଉଛନ୍ତି । ଆନ୍ଧ୍ରର ବିଶାଖାପାଟଣାରୁ ଏକର ପିଛା ୨୬୫ରୁ ୧୨୬୦ ସେର ଧରା ହେଉଛି ।

ପ୍ରଥମବର୍ଷ ଶେଷକୁ ଭାକୁର ତୋ୮୦ଲା, ରୋହି ତୋ୬୦ଲା ଓ ମିରିକାଳି ୪୦ ତୋଳା ହୁଅନ୍ତି ବୋଲି ଧରିନେଇ ଆମେ ଯଦି ହିସାବ କରୁ ଯେ ଏକର ପାଣି ପିଛା ୧୦୦୦ସେର ମାଛ ଅମଳ କରିବା ତେବେ ଆମକୁ ୧୦୦୦ ଭାକୁର ବା ୧୩୩୪ ରୋହି ବା ୨୦୦୦ ମିରିକାଳି ଛାଡ଼ିବାକୁ ପଡ଼ିବ । ଏହା ସାଙ୍ଗକୁ ଶତକଡ଼ା

ପାଞ୍ଚରୁ ଦଶ ଅଧିକା ପାଆଁଳ ଛାଡ଼ିଥିଲେ ଭଲ । କାରଣ ଆପଦ ବିପଦ ତ ନଷ୍ଟହୁଏ ରହିଛି ।

କିନ୍ତୁ ଗୋଟାଏ ଜାତିର ମାଛ ତ ଛାଡ଼ିବା ନାହିଁ—ଭିନ୍ନ ଜାତିରୁ ମିଶାଇବା । ପ୍ରତି ଶହେରୁ ଭାକୁର ୩୦, ରୋହି ୩୦ ଓ ମିରକାଳି ୪୦ ହେଲେ ଏକର ପିଛା ହାରାହାରି ୪୧୬ ଭାକୁର, ୪୧୦ ରୋହି ୫୬୦ ମିରକାଳି ଛାଡ଼ିବା । ଶତକଡ଼ା ଦଶ ଅଧିକା ତ ଛାଡ଼ ଦେବାକୁ ହେବ ।

ଏହି ହିସାବକୁ ମନରେ ରଖି ମାଛ ଚାଷୀ ସବୁଆଡ଼କୁ ବିଚାରକରି ଭିନ୍ନ ଭିନ୍ନ ମାଛର ଅନୁପାତ ଓ ସଂଖ୍ୟା ଠିକ କରିବେ ।

ଯଦି ପୋଖରୀକୁ ଅନାଇ ମାଛ ଛଡ଼ା ଯାଇଛି ପରେ ଆଉ ପଚରାଇବା ଦରକାର ପଡ଼ିବ ନାହିଁ—କିନ୍ତୁ ଯଦି ବେଶିଗୁଡ଼ାଏ ମାଛ ଛାଡ଼ ହୋଇ ଯାଇଛନ୍ତି, ପୋଖରୀ ସମସ୍ତଙ୍କୁ ଦରକାର ମୁତାବକ ଖାଦ୍ୟ ଯୋଗାଇ ପାରିବ ନାହିଁ । ମାଛ ଭଲ ନ ବଢ଼ୁଥିଲେ ଜଣାଯିବ ଯେ ତାଙ୍କର ପେଟ ପୂରୁ ନାହିଁ । ସେତେବେଳେ କିଛି ମାଛ ଧରିନେଇ ଅନ୍ୟ ପୋଖରୀରେ ଛାଡ଼ ଦେବାହିଁ ବୁଦ୍ଧିମାନର କାମ ।

ଏ କଥା ଅବଶ୍ୟ ସତ ଯେ ରୋହି, ଭାକୁର ପୋଖରୀରେ ଶେଉଳ, ବାଲିଆ ଇତ୍ୟାଦି କଦାପି ଛଡ଼ାଯାଇ ପାରିବ ନାହିଁ, କିନ୍ତୁ କଉ, ଗଡ଼ିଶ, ଉଠା, ମାଗୁର ଓ ବାଲିଗୁଡ଼ି ଭଳି ମାଛ ସେହି ପୋଖରୀରେ ରହିଲେ ଜାତିମାଛଙ୍କର ସେଭଳି କିଛି କ୍ଷତି କରନ୍ତି ନାହିଁ । ବରଂ ଭାକୁର, ରୋହି ପ୍ରଭୃତି ଯେଉଁ ପାଣି ପୋକ ଗୁଡ଼ା ଖାଇପାରନ୍ତି ନାହିଁ ସେମାନଙ୍କୁ ଏହିମାନେ ଖାଇ ସଫାକରି

ବଢନ୍ତି ଓ ପୋଖରୀରେ ସେ ଯୋକ ବେଶିଗୁଡ଼ାଏ ରହିପାରନ୍ତି ନାହିଁ । ଏ ଯେଉଁ ମାଛଙ୍କ କଥା କୁହାଗଲା ସେଗୁଡ଼ାକତ ବେଶି ବଡ଼ ହୁଅନ୍ତି ନାହିଁ, 'ତେଣୁ ପ୍ରାୟ ଛଅ ଇଞ୍ଚ ଲମ୍ବର ହୁକୁଡ଼, ସେହି ପାଆଁଳ ଗୁଡ଼ିକେ ଏମାନେ ତାଙ୍କର କିଛି କ୍ଷତି କରି ପାରିବେ ନାହିଁ । ଭାକୁର ସେହିଙ୍କ ଖାଦ୍ୟରୁ କୌଣସି ଭାଗ ଦାବୀ ନକରି ସେମାନେ ଯଦି ପୋଖରୀରେ ରହି ବଢ଼ିବେ ତେବେ ଆମେ କିଛି ଅଧିକା ମାଛ ପାଇପାରିବା । କେତେକଙ୍କ ମୁହଁରୁ ଶୁଣାଯାଏ ଯେ ଭାକୁର ସେହିଙ୍କ ସାଙ୍ଗକୁ ଏହି ଜାତିର କିଛି ମାଛ ଛାଡ଼ି-ଦେଲେ ଭାକୁର ଚେଷ୍ଟା, ପ୍ରକୃତିକୁ ଏମାନେ ଜଗାନ୍ତି ଓ ସେମାନଙ୍କର ବ୍ୟାୟାମ ହୁଏ । ଖାଦ୍ୟ ସଂଗ୍ରହ ପାଇଁ ସେମାନଙ୍କୁ ଯେତିକି ପରିଶ୍ରମ କରିବାକୁ ପଡ଼େ ତା'ବାଦେ ଅଧିକା ବ୍ୟାୟାମ ଲୋଡ଼ାକି ନାହିଁ ସେ ବିଷୟରେ ବିଶେଷଜ୍ଞମାନେ ଆମକୁ ବିଶେଷ କିଛି କହି ପାରୁନାହାନ୍ତି । ତେବେ ଆମେ ଯେତେବେଳେ ଦେଖୁଛେ ଯେ ଭାକୁର ସେହି 'ବଢ଼ିବାରେ କଉ ସେଭଳି କିଛି ଅନ୍ତରାୟ ହେଉନାହାନ୍ତି ଓ ଅନ୍ୟପଟରୁ ଦେଖିଲେ ଏହି ଜାତିର ମାଛ ଖାଇବାକୁ ସୁଆଦ ଓ ବଜାରରେ ଭଲ ପଇସା ମିଳିବ, ସେଥିରୁ କିଛି କିଛି ପୋଖରୀରେ ଛାଡ଼ି ଦେଲେ ଭଲ । ମାନ୍ଦ୍ରା ଟିକିଏ ବେଶି ବଢ଼େ ଓ ଗଡ଼େଇ, ବାଳିଗୁଡ଼ିଙ୍କ ପାଟି ମାନ ଟିକିଏ ବଡ଼ ବଡ଼—ସେହି କାରଣରୁ ସେମାନଙ୍କ ସଂଖ୍ୟା କମ୍ ରଖି କରି ବେଶି ଗୁଡ଼ିଲେ ସୁବିଧା ହେବ ।

# ପୋଖରୀ ଓ ମାଛଙ୍କ ଯତ୍ନ

ପୂର୍ବରୁ ପୋଖରୀର ପୂରା ଯତ୍ନ ନେଇ, ଜଳଯା ଆଁକ ବାନ୍ଧି ଓ ଅନ୍ୟ ବ୍ୟବସ୍ଥା କରି ସାରିଲାପରେ ମାଛଙ୍କୁ ଛାଡ଼ି ମଧ୍ୟ ନିଶ୍ଚିନ୍ତ ହୋଇ ବସିଗଲେ ଚଳିବ ନାହିଁ । ମଝିରେ ମଝିରେ ଦେଖିବାକୁ ହେଉଥିବ ପୋଖରୀର ଅବସ୍ଥା ଭଲ ଅଛି କି ନାହିଁ ଓ ମାଛ ଠିକ୍ ଭାବରେ ବଢ଼ିଯାଉଛନ୍ତି କି ନାହିଁ ।

ପାଣି ଉପରେ ବା ବୁଡ଼ିକରି ରହିଥିବା ଦୁ' ତିନି ମଦା ଜଳଜ ଉଦ୍ଭିଦ ରହିଲେ କୌଣସି କ୍ଷତି ନାହିଁ । ପୋଖରୀ ଭିତରେ ଯେତିକି ଆୟତନର ପାଣି ଅଛି ତାର ଦଶଭାଗରୁ ଭାଗେ ଏଭଳି ଉଦ୍ଭିଦ ରହିପାରେ । ଅନେକ ପ୍ରକାରର ପୋକ ଓ ଛୋଟ ଛୋଟ ଗେଣ୍ଡାଳୁଆ ସେହି ମଦାକୁ ଆଶ୍ରା କରି ରହିଥିବାରୁ ମାଛଙ୍କୁ ଖାଦ୍ୟ ଜୁଟିଯାଏ । ପାଣିଗଛ ମରି ପୋଖରୀ ତଳେ ପଡ଼ିଲେ ଶେଷରେ ମାଛ ଖାଦ୍ୟରେ ପରିଣତ ହୁଏ । ଖରାଦିନେ ମାଛ ତା' ଛାଇରେ ଆଶ୍ରୟ ନିଅନ୍ତି ଓ ସମୟେ ସମୟେ ଶତ୍ରୁ ଗୋଡ଼ାଇଲା-ବେଳେ ତାକୁହିଁ ଆଶ୍ରାକରି ଲୁଚକାଳି ଖେଳି ନିଜକୁ ରକ୍ଷା କରି ନିଅନ୍ତି । କିନ୍ତୁ ଯଦି ବେଶି ହୋଇଗଲା ତେବେ ସୂର୍ଯ୍ୟ ଆଲୁଅ ଓ ପବନ ପାଣି ଭିତରକୁ ଯାଇଁ ପାରିବ ନାହିଁ ଓ ମାଛ ବଢ଼ିବାରେ ବାଧା ପଡ଼ୁଥିବ । ପାଣି ଉପରଟା ଯଦି କଳମ ଇତ୍ୟାଦି ଲଟା ବା ଦଳରେ ସମ୍ପୂର୍ଣ୍ଣ ଢାଙ୍କି ହୋଇଗଲା ତେବେ ମହା ଅସୁବିଧା । ପୋଖରୀରେ ତିନିଫୁଟରୁ ଅଧିକ ପାଣି ଖରାଦିନେ ରହୁଥିଲେ । ମାଛଙ୍କ ପାଇଁ ଛାଇ ବିଷୟରେ ଚିନ୍ତିତ ହେବାର କିଛି ନାହିଁ— ପାଣିର ଛାଇ ତାଙ୍କ ପାଇଁ ଯଥେଷ୍ଟ ।

ପ୍ରତି ପନ୍ଦର ଦିନରେ—ନ ହୋଇ ପାରନ୍ତେ ମାସକୁ ଅନ୍ତତଃ ଥରେ ଏ ପାଖରୁ ସେ ପାଖକୁ ଜାଲ ଟାଣି ଦେଲେ ମାଛଙ୍କର ଥୋଡ଼ାଏ ବ୍ୟାୟାମ ହୋଇଯାଏ ଓ ସେମାନେ ଚମ୍ପା ହୋଇ ଉଠନ୍ତି । ଜାଲ ପକାଇ ଯଦି ଦେଖାଗଲା ଯେ ମାଛଗୁଡ଼ାକ ଦୁର୍ବଳିଆ ଦେଖାଯାଉଛନ୍ତି ତେବେ ସେଥିରୁ କଟ୍ଟି ନେଇ ଅନ୍ୟ ପୋଖରୀରେ ଛାଡ଼ି ଦେଇ ହେବ । ଅଜାତିଆ ମାଛ ଧରା ପଡ଼ିଲେ ବାଦ୍ ଦେଇ ହେବ । ଏହିସବୁ କାରଣ ଯୋଗୁଁ ମଝିରେ ମଝିରେ ଜାଲ ଓଗାଡ଼ାର ଦେବାକୁ ପଡ଼ିବ । ଖରାଦିନେ ପାଣି କମିଗଲେ ମାଛଙ୍କ ଦେହରେ ଅତି ଗ୍ଲେଟ ଗ୍ଲେଟ ପୋକ ଲାଗିଯିବାର ଭୟ ଥାଏ । ଜାଲ ପକାଇଲା ଫଳରେ ମାଛକୁ ପାଖରେ ଦେଖିବାର ସୁଯୋଗ ମିଳୁଥିବାରୁ ବେଳଥାଉ ଥାଉ ପ୍ରତିକାର କରିହେବ ।

ଅନ୍ୟ ପୋଖରୀ ବା ଜଳଭଣ୍ଡାରକୁ ଯଦି ମାଛ ପୋଖରୀରୁ ବାଟଥାଏ ତେବେ ସେହି ବାଟରେ ତାର ଜାଲ ଦେବାକୁ ପଡ଼ିବ ନ ହେଲେ ପୋଖରୀରୁ ସେହି ବାଟେ ମାଛ ବାହାରି ଯିବେ ଓ ଅଜାତିଆ ମାଛ ପୋଖରୀ ଭିତରକୁ ପଶି ଆସିବେ । ନାଳକୂଳ ନାଳରୁ ପୋଖରୀକୁ ମଝିରେ ମଝିରେ ପାଣି ଭର୍ତ୍ତି କରା ନଅନ୍ତି । ଆମ ଗାଁମାନଙ୍କରେ "ବଜା" (ମାଛ ଧରିବା ପାଇଁ ସରୁ ବାଉଁଶ କାଠିରେ ତିଆରି ଏକପ୍ରକାର ଯନ୍ତ୍ର) ବସାଇ ଦିଅନ୍ତି—ତେଣୁ ମାଛ ପଳାଇବାର ଭୟ ନ ଥାଏ—ବାହାର ମାଛ ଆସିଲେ ବଜା ଭିତରେ ଲହିଯାନ୍ତି ଓ ଘରେ ତରକାରୀ ଖର୍ଚ୍ଚ ଚଳେ ।

ବାଳିଆ, ଚଉଳ ପ୍ରଭୃତିଙ୍କୁ ଯିନା ଏହି ଉପାୟରେ ପୋଖରୀଠୁଁ ଦୂରରେ ରଖିହେବ—ଶେଉଳ, ଗଡ଼େଇ ପ୍ରଭୃତିଙ୍କୁ ଅଟକାଇବା ଟିକିଏ କଷ୍ଟ । କାଦୁଅରେ ସେଗୁଡ଼ାକ ବାଟକାଟି

ଚୁଲିଆସନ୍ତି ଓ ବିଲ ବା ଜୋରରୁ ମାଛ ପୋଖରୀ ଭିତରେ ପଶିଯାନ୍ତି । ପୋଖରୀ ବନ୍ଧ ପାଣିର ବହିର୍ଗତ ପାଖଟା ଅର୍ଥାତ୍ ଯେଉଁଠି କନ୍ଧଟା ବାହାରକୁ ଗଡ଼ାଣିଆ ହେଲା ସେହି ପାଖଟାକୁ ଯଦି ହାତେ ପର୍ଯ୍ୟନ୍ତ ବେଶ୍ ତିଖ ବା ସିଧା ରଖିଦିଆ ଯାଇ ପାରେ ତେବେ ଏ ମାଛ ତା'ଉପରକୁ ଉଠି ପୋଖରୀ ଭିତରେ ପଶି ପାରିବେ ନାହିଁ । ଯେଉଁମାନେ କିଛି ମୂଳଧନ ଖଟାଇ ମାଛଚାଷକୁ ବ୍ୟବସାୟ ରୂପରେ ଧରିବେ ସେମାନଙ୍କ ପକ୍ଷରେ ପୋଖରୀ ବନ୍ଧ ଚାରିପଟେ ତାର ଜାଲି ବାଡ଼ ଦେଇଦେବା ସବୁଠୁଁ ଭଲ । ତାର ଜାଲି ବାଡ଼ ଦେଇ ପାରିଲେ ପୋଖରୀ ଭିତରକୁ ବାହାରୁ ସାପ, କଇଁଛ ବା ଓଧ ପ୍ରଭୃତି ପଶିପାରିବେ ନାହିଁ । ଇଟାରେ ପାଞ୍ଚ ଇଞ୍ଚିଆ ବାଡ଼ ପୋଖରୀ ଚାରିପଟେ କରିଦେଇ ପାରିଲେ ଆହୁରି ଭଲ ।

ଏକା ସାଇଜ ଓ ଏକା ବୟସର ଯାଆଁଳ ଛଡ଼ା ଯାଇଥିଲେ ମଧ୍ୟ କିଛି ଦିନ ପରେ ଦେଖିଲାବେଳକୁ ମାଛଗୁଡ଼ାକ ଛୋଟ ବଡ଼ ଦେଖା ଯାଉଥାନ୍ତି । ସେଥିରୁ ଜଣା ପଡ଼ିଲା କେତେଗୁଡ଼ାଏ ମାଛ ନିଜ ଯୋଗ୍ୟତା ବଳରେ ଭଲ ଚରି ବୁଲି ଖାଦ୍ୟ ପାଇ ଯାଉଛନ୍ତି—ଅନ୍ୟମାନେ ପଛରେ ପଡ଼ି ଯାଉଛନ୍ତି । ବଡ଼ଗୁଡ଼ିକୁ ଜାଲ ଘୋସାରିଲାବେଳେ ଧରି ନେଇ ଅନ୍ୟ ପୋଖରୀରେ ଛାଡ଼ିଦେଲେ ସାନଗୁଡ଼ାକ ବଢ଼ିବାର ସୁଯୋଗ ପାଇବେ । ପରିବା କିଆରୀରୁ ବଡ଼ ବଡ଼ ବାଇଗଣ ବା ପୋଟଳ ତୋଳି ନେଇ ଆମେ ହାଟକୁ ପଠାଇ ଦେଉ । ମାଛ ପୋଖରୀରେ ଯଦି କେତେଟା ମାଛ ଜଲଦି ବଢ଼ି ଗଲେ ତାଙ୍କୁ ଧରି ବଜାର ହାଟକୁ ପଠାଇ ଦେବାହିଁ ଲାଭ ଜନକ ।

ମାଛ ପୋଖରୀରେ ସାଧାରଣତଃ ଖତ ଦିଲେହିଁ ଜାଲ ପଡ଼େ । ସକାଳୁ ସକାଳୁ ଜାଲଟାଣି ଦେବା ଭଲ—କାରଣ ପାଣି ଥଣ୍ଡା ଥାଏ ଓ ସେତେକ ମାଛ ଉଚ୍ଛୁଳିଲେ ତାଙ୍କୁ ବାଧେ ନାହିଁ । ଖରା ଟାଣ ହୋଇଗଲେ ଉଚ୍ଛୁଳିବା ମାଛଙ୍କ ଗୋଳ ପାଣିରେ ସୁହାଏ ନାହିଁ ।

ଯେଉଁ ଜାଲରେ ମାଛ ଧରା ହେବ ସେ ଜାଲର ଫାଶ ଗୁଡ଼ା ବଡ଼ ବଡ଼ (ଇଞ୍ଚକଆ) ହୋଇଥିଲେ ଗୋଟିଏ ସୁବିଧା ହୁଏ । ଛୋଟ ମାଛ ଗୁଡ଼ା ତା ଭିତରେ ଗଳି ବାହାରନ୍ତି ଓ ହାତ ଲଗା ହୁଅନ୍ତି ନାହିଁ ।

## ମାଛଙ୍କ ପାଇଁ ବାହାର ଖାଦ୍ୟ

ଗାଈ, ମଇଁଷି ପ୍ରଭୃତି ପୋଷା ଜୀବଙ୍କ ପାଇଁ ଆମେ ବାହାରୁ ଖାଦ୍ୟ ଯୋଗାଉ, ଅର୍ଥାତ୍ ସେମାନେ ଚରିବୁଲି ଯାହା ଖାଆନ୍ତି ସେଥିରେ ତାଙ୍କ ପେଟ ପୂରନ୍ତା ନାହିଁ; ଆମେ କୁଣ୍ଡା, କୋଳଥ ଡାଲିକୁଟା ଇତ୍ୟାଦି ଯୋଗାଡ଼ କରି ରଖୁ । ମାଛଙ୍କ ପାଇଁ ବାହାର ଖାଦ୍ୟ ନେଇ ପୋଖରୀରେ ଯୋଗାଇବା କଥାଟା ଆମ ମନରେ କଦବକର ଉଠୁଥିଏ । କିନ୍ତୁ ସେଭଳି କୌଣସି ଖାଦ୍ୟ ଯୋଗାଇ ମାଛ ପାଳିବା ସମ୍ଭବ ନୁହେଁ ବୋଲି କହିଲେ ବିଶେଷ କିଛି ଭୁଲ ହେବ ନାହିଁ । ଯୋଗାଇବାକୁ ଚେଷ୍ଟା କଲେ ଯେତେ ଖର୍ଚ୍ଚ ହେବ ସେତେକ ମାଛରୁ ଉଠିବା ସମ୍ଭବ ନୁହେଁ । ପୋଖରୀରେ ସ୍ୱାଭାବିକ ରୀତିରେ ମାଛ ଖାଦ୍ୟ ଯେଉଁଭଳି ସୃଷ୍ଟି ହେବ ସେଥି ପ୍ରତି ଦୃଷ୍ଟି ଦେବା ହେଉଛି ବୁଦ୍ଧିମାନର କାମ । ପୋଖରୀରୁ ମାଛ ଯଥେଷ୍ଟ ଖାଦ୍ୟ ନପାଉଥିଲେ ଖତ ଇତ୍ୟାଦି ଦେଇ ପୋଖରୀ ତଳ ଓ

ପାଣିକୁ ଖାଦ୍ୟପୂର୍ଣ୍ଣ କରିବା ଉପାୟ ଚିନ୍ତା କରିବା । ପ୍ରଥମରୁ ଯାହା କୁହାଯାଇଛି—ପାଣି ଭିତରେ 'ମାଛ ଖାଦ୍ୟ ଚକ୍ର' ଘୂରୁଛି । ସେ ଚକ୍ର ଠିକ୍ ଭାବରେ ଘୂରୁଥିଲେ ମାଛଙ୍କ ପାଇଁ ଖାଦ୍ୟର ଅଭାବ ପଡ଼ିବ ନାହିଁ । ଯଦି କେଉଁଠି ଟିକିଏ ଅଟକ ଗଲା—ଅଟକିଯିବାର କାରଣ ଖୋଜି ବାହାର କରି ସେତକ ଦୂର କରିଦେଲେ ଯଥେଷ୍ଟ ହେଲା ।

କିନ୍ତୁ ଯାଆଁଳ ପୋନେଇବେଳେ ଖୁବ୍ ଛୋଟ ଛୋଟ ହୋଇଥାନ୍ତି ସେତେବେଳେ ସେମାନଙ୍କୁ ଧରିଆଣି ଓ ପାଳି ବଡ଼ କରାଇବାକୁ ଉଦ୍ୟମ ଚାଲିଥିଲାବେଳେ ପାଣି ଭିତରେ ଥିବା ଖାଦ୍ୟ ସେମାନଙ୍କ ପାଇଁ ଯଥେଷ୍ଟ ହୁଏ ନାହିଁ—ତେଣୁ କେବଳ ସେମାନଙ୍କ ପାଇଁ ବାହାର ଖାଦ୍ୟ ଯୋଗାଇଦେବା ଦରକାର ପଡ଼େ । ଭାକୁର ରୋହି ମିରିକାଳି କଲାବାଇଁଶୀ ସିନା ବଡ଼ ବଡ଼ ହୋଇଗଲେ ପଙ୍କ ଭିତରୁଁ ଆରମ୍ଭ କରି ପାଣି ଉପରି ପର୍ଯ୍ୟନ୍ତ ସମଗ୍ର ପୋଖରୀଟାକୁ ଚରି ବୁଲି କରି ଦିଅନ୍ତି ଓ ଯେ ଯାହାର ଖାଦ୍ୟ ବାଛି ନିଅନ୍ତି—କିନ୍ତୁ ଏ ସମସ୍ତଙ୍କ ଯାଆଁଳ ଛୋଟବେଳେ ପ୍ରାୟ ଏକ ପ୍ରକାର ଖାଦ୍ୟ ଖାଉଥିବାରୁ ପାଣିରେ ଖାଦ୍ୟର ଅଭାବ ପଡ଼ିଯିବାର ହିଁ କଥା ।

ସୂକ୍ଷ୍ମ ସୂକ୍ଷ୍ମ ଭାସମାନ ପୋକହିଁ ମାଛ ଯାଆଁଳର ପ୍ରଧାନ ଖାଦ୍ୟ । ଖତ ଦେଇ ପାଣିରେ ଥିବା ଏ ପୋକଙ୍କ ସଂଖ୍ୟା ବଢ଼ା ଯାଇ ପାରନ୍ତା । କିନ୍ତୁ ସମୟେ ସମୟେ ଖତଦେବା ଫଳରେ ସୂକ୍ଷ୍ମ ସୂକ୍ଷ୍ମ ଭାସମାନ ଉଦ୍ଭିଦ ସଂଖ୍ୟା ଖୁବ୍ ବେଶି ହୋଇଯାଇ 'ଭାସମାନ ପୋକ' ବା 'ଜୁ-ପ୍ଲାଙ୍କଟନ'ଙ୍କ ଅନୁପାତ କମିଯାଏ । ଖତଦେଲେ ଠିକ୍ କେତେଦିନେ 'ଜୁ-ପ୍ଲାଙ୍କଟନ' ବା 'ଭାସାପୋକ' ଯଥେଷ୍ଟ ସଂଖ୍ୟାରେ ପାଣିରେ ଜନ୍ମିଥିବେ ତାହା ମଧ୍ୟ ଠିକ୍ କରି

କହି ହେବ ନାହିଁ । ଏହିସବୁ ଅସୁବିଧା ସାଙ୍ଗକୁ ଶ୍ରେଷ୍ଠ ଯାଆଁଳ ଠିକ୍ କେବେ ମିଳିବେ—ସେହିଟା କହି ହୁଏ ନାହିଁ । ବର୍ଷକରେ ପ୍ରାୟ ପନ୍ଦର ଦିନ ଏହି ଶ୍ରେଷ୍ଠ ଯାଆଁଳ ଧରିବାର ସମୟ । ସେ ପନ୍ଦର ଦିନଟା କେବେ ପଡ଼ିବ ଓ ସେତେବେଳକୁ ଯାଆଁଳ ପୋଖରୀରେ ଯଥେଷ୍ଟ ଭସା ପୋକ ଥିବେ କି ନାହିଁ ଇତ୍ୟାଦି କଥା ଠିକ୍ ଠିକ୍ ଅନୁମାନ କରି ଯାଆଁଳଙ୍କ ପାଇଁ ଦରକାର ମୁତାବକ ସ୍ୱାଭାବିକ ଖାଦ୍ୟ ଯୋଗାଇବା ସମ୍ଭବ ବା ସହଜ ହୁଏ ନାହିଁ । ସେଇଥିପାଇଁ ବଡ଼ ମାଛଙ୍କ ପାଇଁ କାହାରି ଖାଦ୍ୟ ଚିନ୍ତା ଆମକୁ କରିବାକୁ ନ ପଡ଼ୁଥିଲେ ମଧ୍ୟ ଶ୍ରେଷ୍ଠ ଯାଆଁଳଙ୍କ ପାଇଁ ମଝିରେ ନେଇ ବାହାରୁ କିଛି କିଛି 'ଯାଆଁଳ ଆହାର' ଯୋଗାଇ ଦେବାକୁ ପଡ଼େ ।

ଯାଆଁଳ ଆହାରରୂପେ କାଣ୍ଡିଆ କୁଣ୍ଡା ଓ ବାଦାମ ପିଡ଼ିଆ ବ୍ୟବହାର କରାଯାଇପାରେ । ଦୁଇଟିଯାକ ଏକାଠି ମିଶାଇ ବା ଅଲଗା ଅଲଗା କରି ଦିଆଯାଏ । ପରୀକ୍ଷାଶାଳାରେ କାଚ ଘର ଭିତରେ ଯାଆଁଳଙ୍କୁ ରଖି ଏହି ବାହାର ଖାଦ୍ୟ ଦିଆଯାଇ ଦେଖାଯାଇଛି ଯେ ପ୍ରଥମେ ପ୍ରଥମେ ଦୁଇଦିନ ପର୍ଯ୍ୟନ୍ତ ସେମାନେ ଭଲ ଆଦରି ନ ଥିଲେ । ପରେ ଖାଇବାର ବେଶ୍ ଆଗ୍ରହ ଦେଖାଇଲେ ।

କାଣ୍ଡିଆ କୁଣ୍ଡା, ଚିନାବାଦାମ ପିଡ଼ିଆ ଓ ଭସାପୋକ (ଜୁ-ପ୍ଲାଙ୍କଟନ) ମିଶାଇ କରି ଦେଲେ ଯାଆଁଳଗୁଡ଼ିକ ଭଲ ଭାବରେ ଖାଆନ୍ତି ଓ ବଢ଼ନ୍ତି, କେବଳ କୁଣ୍ଡା-ପିଡ଼ିଆ ସେତେ ଭଲ ଲାଗେ ନାହିଁ ବୋଧହୁଏ ସେଇଥିପାଇଁ ପ୍ରଥମ ଦୁଇଦିନ ସେମାନେ ଖାଇଲେ ନାହିଁ । ପିଡ଼ିଆ ଓ କୁଣ୍ଡା ଭିତରୁ ପିଡ଼ିଆ ଖାଇଲେ ଅପେକ୍ଷାକୃତ ବେଶି ବଢ଼ନ୍ତି । ଯେଉଁଠି କୁଣ୍ଡା ଓ ପିଡ଼ିଆ

ଦିଆଯାଉଥାଏ ସେହି କାଚ ପାତ୍ରରେ 'ଭସାପୋକ' ଅଧିକ ମିଶାଇ ଦେଲେ ମାଛ ଭଲ ବଢୁଛନ୍ତି ବୋଲି ଦେଖାଗଲା । ସେମାନେ ସବୁଠୁଁ ଭଲ ବଢ଼ିଲେ ଯେତେବେଳେ ପିଢ଼ିଆ ଓ ଜୁ-ପ୍ଲାଙ୍କଟନ୍ (ଭସାପୋକ) ସମାନ ଭାଗରେ ମିଶାଇ ଦିଆଗଲା ।

ପରୀକ୍ଷା ଫଳରେ ଆଉ ଗୋଟିଏ କଥା ଜଣାପଡ଼ିଲା । ସମାନ ପରିମାଣରେ ଖାଦ୍ୟ ଭିନ୍ନ ଭିନ୍ନ ପାତ୍ରରେ ପକାଇ ଦିଆଗଲା । ଯେଉଁ ପାତ୍ରରେ କୁଣ୍ଡା ପିଢ଼ିଆ ସହିତ ଭସାପୋକ ମିଶିଥିଲେ ସେହି ପାତ୍ରର ସବୁତକ ଖାଦ୍ୟ ଯାଆଁଳମାନେ ଖାଇଦେଲେ । ଯେଉଁ ପାତ୍ରରେ କେବଳ କୁଣ୍ଡା ପିଢ଼ିଆ ଦିଆଯାଇଥିଲା ସେଥିରୁ ସବୁତକ ଶେଷ ହେଲା ନାହିଁ ଓ ଯେତକ ରହିଗଲା ସେତକ ବାହାର କରି ପକାଇବାକୁ ପଡ଼ିଲା । ଆହୁରି ମଧ୍ୟ ଦେଖାଗଲା ଯେ ଭସାପୋକକୁ ଯେତେ ଜଲଦି ଜଲଦି ଖାଇ ଯାଉଛନ୍ତି, କୁଣ୍ଡା ପିଢ଼ିଆ ଆହାରକୁ ସେତେ ଜଲଦି ଜଲଦି ଖାଉ ନାହାନ୍ତି । ଏଥିରୁ ଏହି ପ୍ରମାଣ ପାଉଛେ ଯେ ଭସାପୋକ ମାତ୍ରା ବେଶି ଥିଲେ ଯାଆଁଳ ଭଲ ବଢ଼ିବେ ।

ବର୍ତ୍ତମାନ ଆମେ ବୁଝିଲେ ଯେ 'ଅନୁଡ଼ା ଖାଲକୁ' (Nursery Pond)ରେ ଯାଆଁଳ ଛାଡ଼ିବା ସମୟରେ ଯେ ପାଣିରେ ଯଥେଷ୍ଟ ଜୁ-ପ୍ଲାଙ୍କଟନ (ଭସାପୋକ) ଥିବା ଦରକାର ଓ ଛାଡ଼ିବାର ଦ୍ୱିତୀୟ ବା ତୃତୀୟ ଦିନରେ କୁଣ୍ଡା ପିଢ଼ିଆ ଦିଆଯିବ । ଖାଲିଆ ଭିତରେ ଦିନକୁ ଦୁଇ ଥର କୁଣ୍ଡା ଓ ପିଢ଼ିଆ (ବାଦାମ, ନଡ଼ିଆ ବା ସୋରିଷ ପିଢ଼ିଆ) ଦେବାକୁ ପଡ଼ିବ । ପିଢ଼ିଆକୁ ଖୁବ ଭଲ ଭାବରେ ଚିକ୍କଣ ଗୁଣ୍ଡ କରି ଦେଇଥିଲେ ତେବେ ଯାଆଁଳ ଭଲ ଭାବରେ ହଜମ କରି ପାରିବ । କୁଣ୍ଡା ପିଢ଼ିଆ ହାଲୁକା ହୋଇଥିବାରୁ ପାଣିରେ ଅନେକ ସମୟ ଟାଙ୍ଗି

ବସିବ ଓ ସେମାନଙ୍କ ଉପରେ ଖାଇବା ପାଇଁ ସୁବିଧା ହେବ । ଏକଣ ଗୁଣ୍ଡ ନ ହୋଇ ଖଦଖଦଡ଼ିଆ ବଡ଼ ଖଣ୍ଡ ଥିଲେ ଶୀଘ୍ର ପାଣି ତଳକୁ ବସିଯିବ ଓ ଯାଆଁଳମାନେ ସୁବିଧାରେ ଖାଇ ପାରିବେ ନାହିଁ । କୁଣ୍ଡାକୁ ସରୁ ଚାଲୁଣିରେ ଚାଳିଭ ଦେଲେ ଝୁଣ୍ଟୁଡ଼ାକ ବାହାରି ଯିବ । ପିଡ଼ିଆ ଗୁଣ୍ଡ କଲା ପରେ ମଧ୍ୟ ଚାଲୁଣିରେ ଚାଳିଭ ଦେଲେ ସୁବିଧା ।

କେନ୍ଦ୍ର ସରକାରଙ୍କ କଟକ ମତ୍ସ୍ୟ ଗବେଷଣା କେନ୍ଦ୍ର ଆଡ଼ୁଭରେ ଥିବା ମିଃ ଆଲିକୁନ ନାନା ଦିଗରୁ ପରୀକ୍ଷା କରେ ଯେଉଁ ଫଳ ପାଇଛନ୍ତି ତାକୁ ଆଖି ଆଗରେ ରଖି ଯାଆଁଳଙ୍କୁ ପ୍ରତିଦିନ ନିମ୍ନଲିଖିତ ମତେ ଆହାର ଯୋଗାଇ ଦିଆଯାଉ ବୋଲି ପରାମର୍ଶ ଦେଉଛନ୍ତି—

ପ୍ରଥମ ପାଞ୍ଚ ଦିନ—ଯେତିକ ଓଜନର ଯାଆଁଳ ଛାଡ଼ିଥିବ, ସେତିକ ଓଜନର ଆହାର ଦିନକୁ ଦୁଇଥର ଦିଅ ।

ତା'ପର ପାଞ୍ଚ ଦିନ—ପ୍ରଥମେ ଛାଡ଼ିଲାବେଳେ ଯେତେ ଓଜନର ଯାଆଁଳ ଦେଇଥିଲ, ସେତିକ ଓଜନର ଆହାର ଦିନକୁ ତିନିଥର ଦିଅ ।

ତା'ପର ପାଞ୍ଚ ଦିନ—ଛାଡ଼ା ବେଳର ଯାଆଁଳ ଓଜନର ଚାରିଗୁଣ ଆହାର ପ୍ରତିଦିନ ଦିଅ ।

ଯୋଗିଷ ପିଡ଼ିଆ ଦେଲେ ମାତ୍ରା କମ କରିବାକୁ ହେବ । ପ୍ରଥମେ ଯାଆଁଳ ଓଜନର ଦୁଇଗୁଣ ନ ଦେଇ ସମାନ ଦିଅ । ପରେ ଦୁଇ ଥରରେ ବଢ଼ାଇ ଦିଆଯିବ ।

କିନ୍ତୁ ଗୋଟିଏ ଅସୁବିଧା ହେଲା ଯାଆଁଳଙ୍କୁ ଓଜନ କରିବା ସହଜ ଓ ସୁବିଧାଜନକ ନୁହେଁ, ତେଣୁ କେତେ ଆହାର ଦେବା ସେଇଟା ଠିକ କରି ହୁଏ ନାହିଁ । ବାଟିଏ ଯାଆଁଳଙ୍କ

ଓଜନ ସହିତ ଶୁଖିଲା ବାଟି କୁଣ୍ଡା ବା ୧½ (ଫାଙ୍ଗା) ଚଣା ବାଦାମ ପିଡ଼ିଆ ବା ଦୁଇବାଟି ନଡ଼ିଆ ପିଡ଼ିଆ ବା ଦେଢ଼ବାଟି ସୋରିଷ ପିଡ଼ିଆର ଓଜନ ସମାନ । ଏହି ହିସାବ ମନରେ ରଖି ଯେତେ ଦୂର ସମ୍ଭବ ଠିକ ଅନୁମାନ କରି ପୋଆଁଙ୍କୁ ଖାଇବାକୁ ଦିଆଯାଇ ପାରେ ।

ସୁଖର କଥା ଯେ ଆମ ଓଡ଼ିଶାର ମତ୍ସ୍ୟ ବିଭାଗ ସାଧାରଣ ଲୋକଙ୍କୁ ନିର୍ଭୁଲ ତଥ୍ୟ ଯୋଗାଇବା କଥାଟା ମନରେ ରଖି ଅତି ଗୁରୁତ୍ୱପୂର୍ଣ୍ଣ ପରୀକ୍ଷା ଚଳାଉଛନ୍ତି । ଆଉ କିଛି ଦିନ ପରେ ଆମେ ଅନେକ ନୂଆ କଥା ଏହି ପୋଆଁଙ୍କ ଖାଦ୍ୟ ବିଷୟରେ ନିଶ୍ଚୟ ଜାଣି ପାରିବା ।

ପୋଆଁଗୁଡ଼ିକ ବଡ଼ି ଆଙ୍ଗୁଠି ଲମ୍ବର ହୋଇଗଲେ ଆମ କାମ ଅନେକ ସହଜ ହୋଇଯାଏ । ସେମାନଙ୍କୁ ଖାଦ୍ୟ ଯୋଗାଇବାର ଚିନ୍ତା ବହୁତ କମିଯାଏ । ସେମାନେ ଯେଉଁ ପୋଖରୀରେ ଛଡ଼ା ହେବେ ସେ ପୋଖରୀରେ ଆଗରୁ ଖତ ଇତ୍ୟାଦି ଦେଇ ଅଜାଡିଆ ମାଛ ମୂଳପୋଛ କରି ଦେଇଥିଲେ କାମ କମିଗଲା ବୋଲି କହିଲେ ଚଳେ । ଗ୍ରେ୍ଡଟ ପୋଆଁଙ୍କ ଖାଇବା ଢଙ୍ଗ ଓ ଅଭ୍ୟାସ ଓ ଆଙ୍ଗୁଠି ଲମ୍ବର ପୋଆଁଙ୍କ ଖାଇବା ଅଭ୍ୟାସ ଓ ଢଙ୍ଗ ଭିତରେ ତଫାତ୍ ଅଛି । ସବୁର ପୋଆଁଟା ଅବଶ୍ୟ ଆଙ୍ଗୁଠି ଲମ୍ବର ହେଲେ ମଧ୍ୟ ପାଣି ମାଛ ଖାଇବାକୁ ଖୋଜେ ଓ ଖାଏ, ସେହି ଚିରକାଳ ସେ ଭଲ ନୁହନ୍ତି ।

# ଯାଆଁଳ ପୋଖରୀରେ ଗୋବର

ଫସଲ ପାଇଁ ଜଳ କଆରୀ ବା ସ୍ୱଳ୍ପକ୍ଷେତ ଯାହା ମାଛଙ୍କ ପାଇଁ 'ଅନୁକୂଳ ଗଡ଼ିଆ' ସେଇଆ। ଅଳ୍ପ ସ୍ଥାନରେ ଗୁଡ଼ାଏ ଅଣ୍ଡା ଗେଣ୍ଟ ଗେଣ୍ଟ ଯାଆଁଳଙ୍କୁ ବଢ଼ାଇ ଟିକଏ ବଡ଼ ବଡ଼ କରି ଅନ୍ୟ ପୋଖରୀକୁ ନେଇଯିବା ପର୍ଯ୍ୟନ୍ତ ସେମାନଙ୍କୁ ଅନୁକୂଳ ଗଡ଼ିଆରେ ରଖାଯାଇ ଥାଏ। କେବଳ ଚାରା ଫଳାଇବା-ବେଳେ ସେହିଭଳି କରାଯାଏ। ଗୋଟାଏ କୁଣ୍ଡରେ ମଞ୍ଜି ବୁଣି ଦେଇ ଗେଣ୍ଟ ଗେଣ୍ଟ ଚାରା ହୋଇଗଲେ ଅନ୍ୟ କୁଣ୍ଡ ବା କଆରୀରେ ଚେକେଇ ବା ଘଞ୍ଚାଇ ଦିଆଯାଏ। ସେଠି ଟିକଏ ବଡ଼ ବଡ଼ ହୋଇଗଲେ କଆରୀରେ ନେଇ ଲଗାଇ ଦିଆଯାଏ। କଆରୀରେ ଯେତେ ଖତ ପିଢ଼ିଆ ଦେଇ ଜଳ କଆରୀ ବା କୁଣ୍ଡରେ ତା ଅନୁପାତରେ ଜେର ବେଶି ଦେଇ ଥାନ୍ତି। ମାଛ ଯାଆଁଳଙ୍କ ପ୍ରତି ମଧ୍ୟ ସେହି ନିୟମ ଲାଗୁ ହୁଏ। ଗେଣ୍ଟ ଖାଲଆଡ଼ିରେ ବହୁ ସଂଖ୍ୟାରେ ଯାଆଁଳ ରହିବେ—ସେ ଖାଲଆର ପାଣିରେ ପ୍ରକୃତ ଯେଉଁ ଖାଦ୍ୟ ରହିଛି ସେତକ ଏତେ ଯାଆଁଳଙ୍କୁ ମୋଟେ ଅଣ୍ଟିବ ନାହିଁ। ତେଣୁ ଯଥେଷ୍ଟ ଖତ ସାର ଦେଇ ଯାଆଁଳ ପୋଖରୀକୁ ଖାଦ୍ୟପୂର୍ଣ୍ଣ କରିବାକୁ ପଡ଼ିବ।

ଆଗରୁ ତ କୁହାଯାଇଛି ପୋଖରୀରେ ଦୁଇ ପ୍ରକାର ଖତ ବା ସାର ଦିଆଯାଇ ପାରେ—ଗୋଟାଏ କୃତ୍ରିମ ଖତ, ଅନ୍ୟଟି ପ୍ରାକୃତିକ ଖତ। ଆମୋନିୟମ ସଲଫେଟ୍, ସୁପରଫସଫେଟ୍, ସୋଡ଼ିୟମ ନାଇଟ୍ରେଟ ପ୍ରଭୃତିକୁ କୃତ୍ରିମ ଖତ ବୋଲି କୁହାଯିବ, ଗୋବର ଖତ, ପିଢ଼ିଆ, କମ୍ପୋଷ୍ଟ ଇତ୍ୟାଦ ପ୍ରାକୃତିକ ଖତ। ଆମେରିକାରେ ପରୀକ୍ଷା ପରେ ବୈଜ୍ଞାନିକମାନେ ଦେଖିଛନ୍ତି ଯେ କୃତ୍ରିମ ସାର

ଦେଲେ ପୋଖରୀରେ ଅତି ସୂକ୍ଷ୍ମ ଉଦ୍ଭିଦଗୁଡ଼ାଏ ଜନ୍ମିଯାଏ । ଆମ କଟକ ମତ୍ସ୍ୟ ଗବେଷଣା କେନ୍ଦ୍ରରେ ମଧ୍ୟ ଠିକ ସେହି କଥା ପ୍ରମାଣିତ ହୋଇଛି । କିନ୍ତୁ ଯାଆଁଳଙ୍କର ଖାଦ୍ୟ ସୂକ୍ଷ୍ମ ଉଦ୍ଭିଦ ନୁହେଁ—ସୂକ୍ଷ୍ମ ପୋକ । ପ୍ରାକୃତିକ ଖତହିଁ ସୂକ୍ଷ୍ମ ପୋକ ଜନ୍ମାଇ ପାରିବ—କୃତ୍ରିମ ଖତ ନୁହେଁ । ତେଣୁ ଯାଆଁଳ ପୋଖରୀରେ ଆମୋନିୟମ ସଲଫେଟ ଜାତୀୟ କୃତ୍ରିମ ସାର ଦେବା ପ୍ରଶ୍ନ ଉଠେ ନାହିଁ ।

## ଗୋବରହିଁ ସବୁଠାରୁ ଭଲ

ଆମ ଦେଶରେ ସବୁଠି ସହଜରେ ଓ ଏକ ପ୍ରକାର ବିନା ମୂଲ୍ୟରେ ଗୋଟିଏ ପ୍ରାକୃତିକ ଖତ ମିଳିଯାଏ—ସେହିଟି ହେଲା ଗୋବର । ଯାଆଁଳ ପୋଖରୀରେ ଦେବା ପାଇଁ ଗୋବରଠାରୁ ଅଧିକ ମୂଲ୍ୟବାନ ଖତ ଆଉ କିଛି ନାହିଁ କହିଲେ ଚଳେ । ଗୋବର ପକାଇ ଦେଲେ ୧୦ରୁ ୧୨ ଦିନ ଭିତରେ ପାଣିରେ ସୂକ୍ଷ୍ମ ସୂକ୍ଷ୍ମ ପୋକ ସାଲୁ ସାଲୁ ହୋଇ ଉଠିବେ । ଏହି ଅବସ୍ଥାରେ ଯେଉଁ ସୂକ୍ଷ୍ମ ଉଦ୍ଭିଦ ଜନ୍ମିଥାଏ ତାହା ଅତି ସାମାନ୍ୟ । ପୋକଙ୍କ ସଂଖ୍ୟା କମି ଆସିଲେ ସୂକ୍ଷ୍ମ ଉଦ୍ଭିଦ ବେଶି ମାତ୍ରାରେ ଜନ୍ମିବା ଆରମ୍ଭ ହୁଏ । ପାଣିରେ ପ୍ରଥମେ ସୂକ୍ଷ୍ମ ଉଦ୍ଭିଦ ବେଶି ସଂଖ୍ୟାରେ ଜନ୍ମିଲେ ସେଗୁଡ଼ିକ ଖାଇ ସୂକ୍ଷ୍ମ ପୋକ ବଢ଼ିବାର କଥା । ଏଇଟା ହେଲା ପାଣି ଭିତରେ 'ମାଛ ଖାଦ୍ୟ ଚକ୍ର' ବୁଲିବାର ମୂଳ କଥା । କିନ୍ତୁ ଦେଖାଯାଉଛି ଯେ ଗୋବରରେ ଯେଉଁସବୁ ଖାଦ୍ୟ ଉପାଦାନ ଅଛି ତାକୁ ପୋକମାନେ ସିଧାସଳଖ ଖାଇ ଯାଇ ପାରନ୍ତି—ଗୋବରକୁ ସେ ସବୁ ଉପାଦାନ ଉଦ୍ଭିଦ

ପ୍ରଥମେ ଖାଇ ସାରେ ପୋକଙ୍କୁ ନଜ ଜରଆଁରେ ଯୋଗାଇବା ଦରକାର ହୁଏ ନାହିଁ ।

ଏକର ପିଛା ଶହେରୁ ଶହେ କୋଡ଼ିଏ ମହଣ ହିସାବରେ ଗୋବର ଦେଲେ କୋଡ଼ିଏ ବାଇଶ ଦିନେ ପାଣିରେ ଯାଆଁଳଙ୍କ ପାଇଁ ଯଥେଷ୍ଟ ପୋକଖାଦ୍ୟ ଉତ୍ପନ୍ନ ହେବ । ଯାଆଁଳ କେବେ ଧରା ହେବେ ସେହି କଥାଟାକୁ ଆଖି ଆଗରେ ରଖି ଏବେଠୁ ଯାଆଁଳ ପୋଖରୀରେ ଗୋବର ଦେବାକୁ ହେବ । ଉଦାହରଣ ସ୍ୱରୂପ ଯଦି ଜୁଲାଇ ମାସର ଦ୍ୱିତୀୟ ସପ୍ତାହରେ ଯାଆଁଳ ଧରିବା, ଜୁନ କୋଡ଼ିଏ ତାରିଖରୁ ପୋଖରୀରେ ଗୋବର ପକାଇବ । ଭିନ୍ନ ଭିନ୍ନ ପ୍ରକାରର ମାଟି ଓ ପାଣିର ଗୁଣ ଭିନ୍ନ ହୋଇଥିବାରୁ ଏ ସମ୍ବନ୍ଧରେ କୌଣସି ଗୋଟାଏ ଧରାବନ୍ଧା ନିୟମ ବାନ୍ଧିଦେଇ ହେବ ନାହିଁ ।

ଯାଆଁଳ ପୋଖରୀ ଶୁଖିଲା ଥିଲାବେଳେ ଗୋବରତକ ପୋଖରୀ ତଳର ଗୁଡ଼ିଆଡେ଼ ଫୋପାଡ଼ିଲେଇ ଛୁଆ ଦିଆଯାଏ—ପାଣି ଥିଲେ ପାଣି ଉପରେ ଗୁଡ଼ିଆଡେ଼ ଅଳ୍ପ ଅଳ୍ପ ଖେଳାଇ ଦେଲେ ଚଳେ । ତା' ନ କରି ପୋଖରୀରେ କେତେଟା ସ୍ଥାନରେ ଅଳ୍ପ ଅଳ୍ପ କୁଢ଼େଇ ଦେଲେ ମଧ୍ୟ ଆମ ଉଦ୍ଦେଶ୍ୟ ପୂରଣ ହୋଇଯିବ । କିନ୍ତୁ ସବୁତକ ଗୋବର ଗୋଟିଏ ସ୍ଥାନରେ ଗଦାକରି ଦେଲେ ଅଳ୍ପ ସମୟ ଭିତରେ ଯଥେଷ୍ଟ ମାଛ ଖାଦ୍ୟର ସୃଷ୍ଟି ହେବ ନାହିଁ ।

ଯାଆଁଳ ପୋଖରୀରେ ଯଥେଷ୍ଟ ଗୋବର ଖତ ଦେବାରୁ ପାଣିରେ ଗୁଡ଼ାଏ ଅନାବନା ଗଛ ଜନ୍ମିବାର ଭୟ ଥାଏ ଓ ଜନ୍ମିଯାଏ ମଧ୍ୟ । ସେଗୁଡ଼ାକ ବେଶି ହେଲେ ଯାଆଁଳଙ୍କର କ୍ଷତି,—କାରଣ ସେହିଗୁଡ଼ାକୁ ଆଶ୍ରାକରି ଅନେକ ପୋକଯୋକ

ଉତ୍ତ୍ୱ ଶ୍ରେଣୀର ଯାଆଁଳ ଖାଇପିବେ । ସେ କଥା ଦୂରରେ ଥାଉ— ଯାଆଁଳଗୁଡ଼ିକ ବିନା ବାଧାରେ ପହଁରା ପହଁରିତ କରି ପାରିବେ ନାହିଁ । ପୋଖରୀ ବନ୍ଧରେ ଯେଉଁ ଅଂଶ ପାଣିକୁ ଲାଗିଥିବ ସେହି ଅଂଶରେ ଯଦି ଗୁଳ୍ମାଏ ଅନାବନା ଗଛ ଉଠେ ନାନା ଅନିଷ୍ଟକାରୀ ପୋକ ସେଇଠି ଅଣ୍ଡାଦେଇ ବଂଶ ବଢ଼ାଇବେ ଓ ଶେଷରେ ଚାରାଙ୍କ ଯାଆଁଳଙ୍କରହିଁ କ୍ଷତି ।

## ଅଣ୍ଡାରୁ ଯାଆଁଳ

ଆମ ଗାଁମାନଙ୍କରେ ଯାଆଁଳ ଧରି ନେଇ ପୋଖରୀରେ ଛାଡ଼ିବା କଥାଟାକୁ ସମସ୍ତେ ପସନ୍ଦ କରନ୍ତି—ଅଣ୍ଡାରୁ ଯାଆଁଳ ଉଠାଇବାର କୌଶଳ ଜାଣନ୍ତି ନାହିଁ । ଏ କଥା ସତ ଯେ ନଈରେ ପଚ୍ଛିଲପାଣି ଆସିବା ବେଳେ ଫେଣ ନେଇ ପୋଖରୀରେ ଛାଡ଼ । ସେହି ଫେଣରେ ତ ମାଛ ଅଣ୍ଡା ଥାଏ—ସେଥିରୁ ଯାଆଁଳ ବାହାରିଲା ପରେ ଅଧିକାଂଶ ଯାଆନ୍ତି ଅନ୍ୟମାଛ ଓ ପୋକଙ୍କ ପେଟକୁ—ଯେତିକ ଉଧରିଗଲେ ସେତିକଙ୍କ ଭାଗ୍ୟ ଜୋର ।

କିନ୍ତୁ ଯେ ମାଛଚାଷ କରିବେ ତାଙ୍କୁ ମାଛ ଅଣ୍ଡାରୁ ଯାଆଁଳ ଉଠାଇବା କୌଶଳ ଶିଖିବାକୁ ହିଁ ପଡ଼ିବ । ସେ କୌଶଳ ଶିଖିବାକୁ ହେଲେ ମାଛ ଅଣ୍ଡା ଓ ଯାଆଁଳଙ୍କ ବିଷୟରେ ଆଉ କେତୋଟା ସାଧାରଣ କଥା ଜାଣି ନେବା ।

କାନ ଦେଇ ଯେଉଁ ଫେଣ ନେଇଆସୁ ସେଥିରେ ନାନା ଜାତିର—ଏପରିକି ପୋକଙ୍କ ଅଣ୍ଡା ମଧ୍ୟ ମିଶାମିଶି ହୋଇଥାଏ । ଆଣିଲାପରେ ପ୍ରଥମେ ସେଥିରୁ ଅଳିଆ, ପୋକ ଯୋକ ବାଛି ଦେଇ ସବୁ ଗୁଳୁଣିରେ (ଗୁଳୁଣିକୁ ପାଣିଭିତରେ ଅଧା ବୁଡ଼ାଇ) ଆସ୍ତେ ଆସ୍ତେ ଢାଳିଦେଲେ ଅତି ଶ୍ରେଷ୍ଠ ଅଣ୍ଡାଗୁଡ଼ାକ ତଳକୁ

ହେଲେ ଫୁଟିବେ । ଭାକୁର ରୋହି ଅଣ୍ଡା ବଡ଼ ବର୍ଣ୍ଣ—ତେଣୁ ଯେଉଁ ଅଣ୍ଡା ଗୁଡ଼ାକ ଗଳି ପଡ଼ିଲ ସେଗୁଡ଼ାକ ଫୋପାଡ଼ି ଦିଆଯିବ । ମାଛଚାଷ ଶିଖାଇବାକୁ ଥିବା ମତ୍ସ୍ୟ ବିଭାଗର ଲୋକଙ୍କଠୁ ବୁଝି ସରୁ ତାର ଜାଲି ଚୁଲୁଣିଟିଏ ତିଆରି କରାଇ ନେଇଥିଲେ ଭଲ । ଚୁଲୁଣି କଣା ଗୁଡ଼ାକ ୩.୦ରୁ ୩.୫ ମିଲିମିଟର ହୋଇଥିବା ଦରକାର । ଭାକୁର ରୋହି ଅଣ୍ଡା ୩.୫ ମିଲିମିଟରରୁ ବଡ଼ । ସେଗୁଡ଼ିକ ଚୁଲୁଣିରେ ଗଳି ନ ପଡ଼ି ଉପରେ ରହିଯିବେ ।

ଅଣ୍ଡାରୁ ଛୁଆ ଉଠାଇବା ପୋଖରୀରେ ସରୁ ଜାଲି ମଶାରି କନା ଓ ବାଉଁଶ ଖୋଣ୍ଟି ଟାଙ୍ଗିଦିଆ ହୋଇଥିବ । ସେଥିରେ ଅଣ୍ଡାତକ ଗୁଡ଼ିଦେଲେ ଯେତିକି ଯାଆଁଳ ଅଣ୍ଡା ଫୁଟାଇ ବାହାରୁଥିବେ ସେତିକି ମଶାରି କନାବାଟେ ତଳକୁ ଖସି ଯାଉଥିବେ । ଶେଷକୁ ମଶାରି କନା ବାହାର କରି ଆଣିଲେ ଅଣ୍ଡା ଖୋଳପାତକ ବାହାରି ଆସିବ ।

ଆମେ ଯେତିକିବେଳେ ସଂଗ୍ରହ କରି ଆଣୁ ସେତିକିବେଳକୁ କେଉଁ ଅଣ୍ଡା ଭିତରେ ଛୁଆ ହୋଇ ଆସିଲାଣି ଓ କେଉଁଥିରେ ଛୁଆ ଚୁଳିବାର ଦେଖା ଚଳିଛି—କେଉଁଠା ଭିତରେ ଛୁଆ ମୋଟେ ତିଆରି ହୋଇନାହିଁ । ତେବେ ସଂଗ୍ରହର ତିନିରୁ ଛଅ ଘଣ୍ଟା ଭିତରେ ଅଣ୍ଡାଗୁଡ଼ିକ ଭିତରୁ ଯାଆଁଳ ବାହାରି ପଡ଼ନ୍ତି । କୋଡ଼ିଏ ଘଣ୍ଟା ରଖିଦେଇ ମଶାରି କନା ବାହାର କରି ଅଣାଯାଇ ପାରେ ।

ଅଣ୍ଡା ଭିତରୁ ବାହାରିଲା ବେଳକୁ ଯାଆଁଳ ଦେହରେ ଲାଗି ଟୋଟାଏ ସ୍ୱଚ୍ଛ ଝୋଳଥାଏ ଓ ସେଇଥିରେ ଯେତିକି ଖାଦ୍ୟ ଥାଏ ସେଥିରେ ଯାଆଁଳଟା ଅନ୍ତତଃ ଦୁଇଦିନ ଚଳିଯାଏ । ତା' ପରେ ସେ ଗୁଡ଼ିକ ଅନ୍ୟ ଖାଦ୍ୟ ଦରକାର କରନ୍ତି । ସେ ଖାଲିଆ ପାଣିରେ ତାଙ୍କ ପାଇଁ ଯଥେଷ୍ଟ ଖାଦ୍ୟ ନଥାଇ ପାରେ—ତେଣୁ

ଯାଆଁଳ ଗଡ଼ିଆ ,ବା ଅନୁରୂପ ଗଡ଼ିଆରେ ନେଇ ଛାଡ଼ିଦେବା ଭଲ । ମଶାରୀ କନା ଖୋଳ (ଅଣ୍ଡାରୁ ଛୁଆ ଉଠାଇବା ପାଇଁ କରାଯାଇଥାଏ) ବାହାରେ ଆଉ ଗୋଟାଏ କନାର ଖୋଳ ଥିବାରୁ ଆଖିବାଳ ଆକାରରେ ଯାଆଁଳଗୁଡ଼ିକ ଉ ସନ୍ଧିଥିରେ ରହିଥାନ୍ତି । ତେଣୁ ସେଥିରୁ ହାଣ୍ଡିକୁ ଉଠାଇ ଦେଇ ଅନ୍ୟ ଗଡ଼ିଆକୁ ବହି ନେବାପାଇଁ ସୁବିଧା ହୁଏ । ଏତେବେଳକୁ ଯାଆଁଳର ଲମ୍ବ ୪ରୁ ୫.୫ ମିଲିମିଟର । ଇଞ୍ଚା ହେଲେ ପ୍ରାୟ ପଚାଶ ମିଲିମିଟର ( ୨୫.୫୪୯ ) । କେତେ ଶ୍ରେଷ୍ଠ ହୋଇଥାଏ ଅନୁମାନ କରାଯାଇପାରେ ।

ଆମେ ଯେଉଁ ଆଖିବାଳ ଭଳି ଯାଆଁଳ ନଈରୁ ଧରିଆଣୁ ତାଙ୍କ ବୟସ ହୋଇଥାଏ ଅଳ୍ପ କେତେ ଘଣ୍ଟାରୁ ଦୁଇତିନ ଦିନ, ଅର୍ଥାତ୍ କେତେଘଣ୍ଟା ବା ଦୁଇତିନ ଦିନ ପୂର୍ବରୁ ସେମାନେ ଅଣ୍ଡାରୁ ବାହାରି ଥାଆନ୍ତି । ସେମାନଙ୍କୁ ସିଧା ସଳଖ ମାଛ ପୋଖରୀରେ ଛାଡ଼ିଦେଲେ ଅତି ଅଳ୍ପ ସଂଖ୍ୟାରେ ଶେଷପର୍ଯ୍ୟନ୍ତ ଜୀଅନ୍ତି । ସେଗୁଡ଼ିକୁ ଯାଆଁଳ ଗଡ଼ିଆରେ ଛାଡ଼ି ଖାଇବାକୁ ଦେଇ ଯତ୍ନନେଇ ବଡ଼ାଇ ପାରିଲେ ମାଛ ପୋଷଣ ପାଇଁ ଯଥେଷ୍ଟ ସଂଖ୍ୟାରେ ବଡ଼ ଯାଆଁଳ ମିଳିପିବ ।

---

## ମାଛ ପୋଖରୀରେ କିପରି ଖତ ଦେବା

ମାଛ ପୋଖରୀରେ କି ପ୍ରକାରର ଖତ ଦିଆଯିବ ସେକଥା ଏଥିପୂର୍ବରୁ କୁହାଯାଇଛି । ନୂଆ ପୋଖରୀ ତଳଟା ଶୁଖିଲା ଥିଲେ ଖତ ଦେବାରେ କିଛି ଅସୁବିଧା ନାହିଁ–ଟିକିଏ ସାବଧାନ ହେବାକୁ ପଡ଼ିବ, ଯଦି ପୋଖରୀରେ ପାଣି ଥାଏ ଓ ବିଶେଷତଃ ସେ ପାଣିରେ ପୂର୍ବରୁ ମାଛ ଥାଆନ୍ତି । ସେଭଳି ପୋଖରୀରେ ସିଧାସଳଖ ଗୋବର

ପିଡ଼ିଆ ଅଳିଆ ପ୍ରଭୃତି ପ୍ରକାଇ ଦେଲେ ମାଛଙ୍କ ଉପରକୁ ବିପଦ ଆସିପିବାର ଆଶଙ୍କା ନଷ୍ଟ ହୁଏ ରହିଛି ।

ପୋଖରୀ ହୁଡ଼ା ଉପରେ ବା ସେହିଭଳି ଏକ ସ୍ଥାନରେ ଗୋଟିଏ କୁଣ୍ଡ ରଖି ସେଥିରେ ଗୋବର ପିଡ଼ିଆ ଅଳିଆ ଇତ୍ୟାଦି ସଢ଼େଇ ଦିଅ । ସଢ଼ିଯାଇ ତା'ର ରଙ୍ଗ ବଦଳିଗଲେ ସେ କୁଣ୍ଡଟିରେ ପାଣି ଭର୍ତ୍ତି କରିଦିଅ ଓ ଭଲ ଭାବରେ ଘାଣ୍ଟିଦିଅ । ଦିନେ—ଦି ଦିନ ପରେ ଅଳିଆତକ ତଳକୁ ବସିଯିବ, ଉପରେ ପାଣିଟା ଠିଆ ହୋଇଯିବ । ସେତେବେଳକୁ ସେ ପାଣି ଦେହରେ ଅସଲ ସାରତକ ଗୋଳାଇ ହୋଇ ଯାଇଥିବ । ସେ ପାଣିତକ ପୋଖରୀରେ ମିଶାଇ ଦେଇ ଆଉ ଥୋଡ଼ାଏ ପାଣି କୁଣ୍ଡରେ ଦେଇଦିଅ । ଏହିଭଳି କେତେଥର ପାଣି ଦେଇଦେଲେ ଖତ ଅଳିଆ ପିଡ଼ିଆର ସହଜରେ ସରଳ ରାସାୟନିକ ଉପାଦାନ ତଳ ପୋଖରୀ ଭିତରକୁ ଚାଲିଯିବ ।

ଯଦି ପୋଖରୀ ହୁଡ଼ାରେ ବା ନିକଟରେ କୁଣ୍ଡ ତିଆରି କରିବାର ସୁବିଧା ନଥାଏ ତେବେ ଆଉ ଗୋଟାଏ ସହଜ କାମ କରିପାରିବ ପାରେ । ପାଣି କୂଳରେ ପାଖକୁ ପାଖ ବାଉଁଶ ପୋତି ନିବୁଜବାଡ଼ ଭଳି କରିଦେଇ ତା'ର ଭିତରେ ଏହିସବୁ ଖତ ଅଳିଆ ପିଡ଼ିଆ ପ୍ରଭୃତି ଜମା କରି ଦିଆଯାଏ । ସେଗୁଡ଼ାକ ଆସ୍ତେ ଆସ୍ତେ ପଚି ପୋଖରୀ ପାଣିକୁ ସାର ଯୋଗାଉଥାଏ ।

ସାର ପ୍ରୟୋଗ ପରେ ପୋଖରୀ ପାଣିର ରଙ୍ଗ ଯଦି ବଦଳିଲା ତେବେ ଜାଣିବାକୁ ହେବ ଯେ ସାର ଭେଦିଲା ଓ ପୋଖରୀଟିରେ ମାଛଙ୍କ ଖାଦ୍ୟ ବଢ଼ିବାର ବାଟ ଫିଟିଲା ।

---

# ମାଛଙ୍କ ବେମାରି ଓ ଶତ୍ରୁ

ଚିତଳ ବାଲିଆ ଶାଳ ଶେଉଳ ପ୍ରଭୃତି ମାଛ ଓ ଭକୁର ରୋହି ମିରିକାଳି ଯାଆଁଳଙ୍କ ଶତ୍ରୁ—ଏମାନଙ୍କ ସିଙ୍ଗୀକୁ ବେଙ୍ଗ, ପାଣିଧଣ୍ଡ, କଇଁଛ, କୁମ୍ଭୀର ଅଛନ୍ତି । ଚିଲ ବଗଙ୍କ ଟପାଭୁଇଁ ହେଲା ମାଛ ପୋଖରୀ । ପାଣି କମିଗଲେ ଓଧ ପଶି ବଡ଼ ବଡ଼ ଭକୁର ରୋହି ଖାଇଯାଏ । ଚାର-ଜାଲି-ବାଡ଼ ବା ଇଟା ପାଚେରୀ କରି ସାପ କଇଁଛ କୁମ୍ଭୀର ଓଧ ଇତ୍ୟାଦିଙ୍କୁ ଅଟକାଇ ଦିଆଯାଇ ପାରିବ ଅନ୍ୟମାନଙ୍କୁ ଯେତେଦୂର ସମ୍ଭବ ହୁରୁଡ଼ାଇ ଦେବା ବ୍ୟତୀତ ଅନ୍ୟ ଉପାୟ ବା କଣ ଅଛି ! ବତକଙ୍କୁ ଯାଆଁଳ ପୋଖରୀରେ ପଶିବାକୁ ଦିଆଯାଇ ପାରିବ ନାହିଁ, କିନ୍ତୁ ବଡ଼ମାଛ ଥିବା ଖୋଖରୀରେ ସେମାନେ ପହଁରିଲେ କିଛି କ୍ଷତି ନାହିଁ—ବରଂ ଲାଭ ବୋଲି କୁହାଯାଉଛି । ସେମାନେ ପାଣିରେ ହଗିଲେ ମାଛଙ୍କୁ ଖାଦ୍ୟମିଳେ ଓ ପୋଖରୀରୁ ନାନା ପୋକ ଖାଇ ପାଣିକୁ ମାଛଙ୍କ ପାଇଁ କେତେକ ପରିମାଣରେ ନିରାପଦ କରିଦିଅନ୍ତି ।

ମାଛଙ୍କୁ କେତେକ ପ୍ରକାରର ବେମାରି ଧରେ । ଏଣିକି ଓଡ଼ିଶାର ଗୃହଆଡ଼େ ଅଞ୍ଚଳ ଶାସନ ବ୍ଲକ ଓ ପ୍ରତି ଅଞ୍ଚଳରେ ମାଛଚାଷ ବିଷୟରେ ଶିକ୍ଷାଦେବା ପାଇଁ ଜାଣିବା ଲୋକେ ରହିବେ । ସେମାନଙ୍କ ସହିତ ପରାମର୍ଶ କରି ମାଛକୁ ରୋଗ ହେଲେ ପ୍ରତିକାର କରିବା ଉଚିତ ।

ଯେଉଁ ମାଛ ଓ ଅନ୍ୟ ଜୀବ ଭକୁର ରୋହି ପ୍ରଭୃତିଙ୍କୁ ଖାଇ ଯାଆନ୍ତି ସେମାନଙ୍କୁ ବିଷଦେଇ ମାରିଦେବା ଉଦ୍ଦେଶ୍ୟରେ ଶସ୍ତା ଓ ସହଜରେ ମିଳୁଥିବା ବିଷ କିଭଳି ପ୍ରୟୋଗ କରାଯିବ ସେକଥା ମାଛ ବିଶେଷଜ୍ଞମାନେ କହୁଛନ୍ତି । କିନ୍ତୁ ଏ ବହିରେ ସେ ବିଷୟରେ

କୌଣସି ଙ୍କଥା ଉଲ୍ଲେଖନ କରିବାର ଉଦ୍ଦେଶ୍ୟ ହେଲା ଲୋକେ ସେ ବିଷୟର ଠିକ୍ ପ୍ରୟୋଗ ନ ଜାଣିଲେ ଲାଭଠୁଁ କ୍ଷତି ବଳି ପଡ଼ିବ । ବିଷ ପ୍ରୟୋଗର ବ୍ୟାପକ ଜ୍ଞାନ ଅନ୍ୟ ଲୋକର ମାଛ ପୋଖରୀକୁ ଉଜାଡ଼ ଦେବାରେ ମଧ୍ୟ ସାହାଯ୍ୟ କରିପାରେ । ଏହି ଆଶଙ୍କା ଯୋଗୁଁ ସେ ଦିଗ ପ୍ରତି ଏଠାରେ ଦୃଷ୍ଟି ଦିଆଗଲା ନାହିଁ ।

## ମାଛ "ମଡ଼କ"

ସମୟେ ସମୟେ ପୋଖରୀରେ ମାଛ ମଡ଼କ ହୁଏ । କୌଣସି ରୋଗ ଧରିନଥିଲେ ସୁଦ୍ଧା ଅଳ୍ପ ସମୟ ଭିତରେ ପ୍ରାୟ ସବୁଜାତି ଭଲ ମାଛ ମରିଯାଆନ୍ତି । ଆମେ ଭାବୁ ମାଛଙ୍କୁ ସଂକ୍ରାମକ ରୋଗ ଧରିଲା—କିନ୍ତୁ ପ୍ରକୃତରେ କୌଣସି ରୋଗ ହୋଇ ନଥାଏ ।

ପାଣିରେ ସଢ଼ା ଗନ୍ଧ ଅତ୍ୟଧିକ ହୋଇଯାଏ ତେବେ ପାଣିରେ ଅମ୍ଳଜାନର ମାତ୍ରା ଖୁବ୍ ବଢ଼ିଯାଏ । ମାଛ ତା'ର ନିଶ୍ୱାସରେ ଗୁଡ଼ାଏ ଅମ୍ଳଜାନ ନିଏ ଓ ତା' ଚମଡ଼ା ତଳେ, ଡେଣା ବା ପକ୍ଷୀରେ, ଆଖି ଗୁଳପରେ, ପେଟ ଭିତରେ ଓ ଅନ୍ତଦେହରେ ସେହିବାଷ୍ପ ଜମିଯିବା ଫଳରେ ସୂକ୍ଷ୍ମରକ୍ତ ନଳୀ ବା ଜାଳଗୁଡ଼ିକ ଫାଟି ହୋଇଯାଏ । ବଡ଼ ସାନ ସବୁ ମାଛଙ୍କର ଏହି ଦଶା ହୁଏ । ତୁରନ୍ତ ଧରିନେଇ ଅନ୍ୟ ପୋଖରୀରେ ଛାଡ଼ିଦେଲେ ରକ୍ଷା—ନହେଲେ ସବୁଗୁଡ଼ିକ ମରିଯିବେ ।

ଜଳଗଛରେ ଓ ଜଳଉଦ୍ଭିଦ—ଉଦ୍ଭିଦ କାରଣରୁ ସୃଷ୍ଟିନାଶ ହେଲା ଭଳି ଅମ୍ଳଜାନ ଅଧିକ ହୋଇଯିବାରୁ ମାଛ ମରିଯାନ୍ତି; ଅଥଚ ସେହି ବାଷ୍ପର ଅଭାବରୁ ମଧ୍ୟ ମାଛମଡ଼କ ହୋଇ ପୋଖରୀ ସଫା ହୋଇଯାଏ । ଥରେ ଥରେ ଖରା ଦିନେ ସକାଳୁ ହଠାତ୍ ଅସ୍ୱାଏ ବର୍ଷା ହୋଇଗଲା । ତା'ର କିଛି ସମୟ ପରେ ଦେଖିଲା

ବେଳକୁ ମାଛଗୁଡ଼ାକ ଆସି ଉପରେ ପାଣି ପାକୁ ପାକୁ କରୁଛନ୍ତି, ଅଣନିଶ୍ୱାସୀ ହୋଇ ପବନ ଟିକଏ ପାଇବାକୁ ବ୍ୟାକୁଳ ହେଉଛନ୍ତି । ପୋଖରୀ ତଳେ ଗଛପତ୍ର ଇତ୍ୟାଦି ପଚିବା ଫଳରେ ଅମ୍ଳଜାନ ମାତ୍ରା କମିଯାଏ । ରାତିରେ ନିଶ୍ୱାସ ନେଇ ମାଛମାନେ ଅମ୍ଳଜାନ ମାତ୍ରା ଆହୁରି କମାଇ ଦେଇଥାନ୍ତି । ସକାଳ ହେବାବେଳକୁ ପାଣିର ଉପର ସ୍ତରରେ ହିଁ ଯାହା ଅଳ୍ପକିଛି ଅମ୍ଳଜାନ ଥାଏ । ଏତିକିବେଳେ ଯଦି ଅସ୍ରାଏ ବର୍ଷା ହେଉଚି ଦେଲେ ଉପରୁ ତଳ ପାଣି ଗୋଳେଇ ହୋଇଯିବ । ତଳ ପାଣିରେ ଅମ୍ଳଜାନ ନ ଥାଏ । ଉପର ପାଣିରେ ଥିବା ସାମାନ୍ୟ ଅମ୍ଳଜାନ ବାସ୍ତବିକ ସମୁଦାୟ ପାଣିରେ ଗୋଳାଇ ହୋଇଯିବା ଫଳରେ ମାଛଙ୍କ ନିଶ୍ୱାସ କାମ ଅଚଳ ହୋଇଯାଏ ଓ ଉପରକୁ ଉଠି ଆସି ସେମାନେ ପାଣି ପାକୁ ପାକୁ କରି ଛଟ ଛଟ ହୁଅନ୍ତି । ଯଦି ବେଳ ଥାଉ ଥାଉ ଜଣା ପଡ଼ିଗଲା, ମାଛତକ ଅନ୍ୟ ପୋଖରୀରେ ନେଇ ଛାଡ଼ି ଦିଆଯାଇପାରେ । ଆଉ ଗୋଟାଏ ଉପାୟରେ ସେ ଅବସ୍ଥା ସମ୍ଭାଳା ଯାଇପାରେ—ଦି ଚାରି ଜଣ ଖଣ୍ଡେ ଖଣ୍ଡେ ବାଉଁଶ ଧରି ପାଣିକୁ ବାଡ଼େଇଲେ ପାଣିରେ ପବନରୁ ଅମ୍ଳଜାନ ମିଶିଯାଏ ଓ ମାଛଙ୍କ ନିଶ୍ୱାସ ନେବା କାମ ସହଜ ହୋଇଯାଏ । କ୍ରମେ ଦିନ ବେଶୀହୋଇ ଖରା ଚଢ଼ିଗଲେ ପୋଖରୀରେ ଥିବା ସୂକ୍ଷ୍ମ ଉଦ୍ଭିଦମାନେ ପାଣିରେ ଅମ୍ଳଜାନ ଭରି ଦିଅନ୍ତି ଓ ମାଛ ବଞ୍ଚିଯାନ୍ତି ।

ଆଉ ଗୋଟିଏ ବିପଦ ଅଛି—ଗୋଟାଏ ପ୍ରକାରର ଅତି ସୂକ୍ଷ୍ମ ଉଦ୍ଭିଦ (algae) ମାତ୍ରା ଖୁବ୍ ବେଶି ହୋଇଗଲେ ମାଛର ଗାଲି ନିଶ୍ୱାସ ନେଇ ପାରେ ନାହିଁ ଓ ମାଛ ମରିଯାନ୍ତି ।

କୌଣସି କୌଣସି ଉଦ୍ଭିଦ ପାଣିକୁ ବିଷାକ୍ତ କରିଦେବା ଫଳରେ ମଧ୍ୟ ମାଛଙ୍କର ମୃତ୍ୟୁ ହୁଏ ।

---

# ପାଣିରଖା' ମାଟି

ମାଛ ପାଳିବା ପାଇଁ ପୋଖରୀଟିଏ ଖୋଳିବାକୁ ଗଲାବେଳେ, ଆମକୁ ଦେଖିବାକୁ ହେବ, ସେଥିରେ ପାଣି ରହିବ କି ନାହିଁ ଓ ପାଣିକୁ ଧରି ରଖିବାର ଶକ୍ତି ପୋଖରୀତଳ ମାଟିର ଅଛି କି ନାହିଁ । ଗୋଟାଏ ଗୋଟାଏ, ପୋଖରୀରେ ବର୍ଷାଦିନେ ପାଣି ଭର୍ତ୍ତି ହୋଇଥାଏ କିନ୍ତୁ ଅଳ୍ପ ଦିନେ ତା' ତଳଟା ପାଣିତକ କୁଆଡ଼େ ଶୋଷିନିଏ । ଖାଲୁଆ; ପାଣି ଜମି ରହୁଛି—ଶୁଖୁନାହିଁ ବା ପାଁକୁଆଳିଆ ଜମି—ମାଛ ପୋଖରୀ ପାଇଁ ଉତ୍କୃଷ୍ଟ । ମାଟିଟା ଯଦି ଖୁବ୍ ଟାଣଟା ହୋଇଥାଏ ତେବେ ମାଛ ଭଲ ବଢ଼ନ୍ତିନାହିଁ । ମାଟି ଯଦି ପଟୁଆଳିଆ ବା ପଟୁଭଳି ହୋଇଥାଏ, ମାଛ ପୋଖରୀ ଖୋଳି ମାଛଚାଷ କରିବାରେ କୌଣସି ଅସୁବିଧା ନାହିଁ । ଏହିଭଳି ପୋଖରୀରେ ପାଣି ତଳକୁ ଭେଦି ନଯାଇ ବେଶି ଦିନରହେ ଓ ମାଛ ବଢ଼ିବା ପାଇଁ ଉର୍ବର କ୍ଷେତ୍ର ସୃଷ୍ଟିହୁଏ ।

ଆମ ଗାଁମାନଙ୍କରେ ଲୋକଙ୍କର ବେଶୀ ଜମି ନଥିବାରୁ ଘର ତୋଳା ଇତ୍ୟାଦି କୌଣସି କାରଣରୁ କିଛି ମାଟି ଉଠାଇଲେ ଛୋଟ ଛୋଟ ଖାଲ ହୋଇଯାଏ ଓ ସେଇଗୁଡ଼ିକୁ ଟିକିଏ ମାଜି ନେଇ ମାଛ ଛାଡ଼ନ୍ତି, କେହି କେହି ମାଛ ଛାଡ଼ିବା ପାଇଁ ପୋଖରୀ ଯେ ଖୋଳୁନାହାନ୍ତି ତା ନୁହେଁ । ଭୂମି ସମସ୍ୟାର ସମାଧାନ ଯେଉଁଭଳି ଭାବରେ ହେବାକୁ ଯାଉଛି ଏଣିକି ପ୍ରତି ଗାଁରେ କିଛି ନା କିଛି କୋଠ ଜମି ରହିଯିବ । ସେଥିରେ ବଡ଼ ବଡ଼ ମାଛ ପୋଖରୀ ଖୋଳା ଯାଇପାରେ ।

ଦଶ ଏକର ଜମି ନେଇ ମାଛଚାଷ କରିବାକୁ ଗଲେ, ଅନ୍ତୁଡ଼ି ଗୁଣ୍ଡିଆ ବା ଗୁଣ୍ଡି ଗଡ଼ିଆ (Nursery- pond) ପାଇଁ ଅଧ ଏକର,

ଯାଆଁଳ ବଢ଼ାଇ ପାଳିବା ପୋଖରୀ ପାଇଁ ଦୁଇଏକର ଓ ବଡ଼ ମାଛ ରଖିବା ପାଇଁ ସାଢ଼େ ସାତ ଏକର ହେବ ଭଲ ଚଳିବ ।

ଅନୁଢ଼ ବା ଗଭୀର ଗଡ଼ିଆ ଗୁଡ଼ିକ ଲମ୍ବ ଓ ଚୋଡ଼ିଏ ଫୁଟ ଓସାର ହେଲେ ଭଲ । "ପାଳିବା ପୋଖରୀ" ଲମ୍ବ ଷାଠିଏରୁ ଅଶୀଫୁଟ ଓ ଓସାର କୋଡ଼ିଏ ଫୁଟ ହେବ । ପୋଖରୀଟିର ଲମ୍ବ-ଓସାର ବେଶି ହେବ ବୋଲି ସେଇ ଅନୁପାତରେ ଗଭୀର କରି ପକାଇବା ଉଚିତ ନୁହେଁ । ବଡ଼ ମାଛଙ୍କ ପାଇଁ ଯେଉଁସବୁ ପୋଖରୀ କରାଯିବ ସେଗୁଡ଼ା ଟିକିଏ ବେଶି ଗଭୀର (୬ ରୁ ୮ ଫୁଟ) ଓ ବେଶି ଲମ୍ବାହେବା ଉଚିତ—ତାହେଲେ ମାଛଙ୍କୁ ଲମ୍ବାଚରା ବି ମିଳିଯିବ ଓ ସେମାନେ ଭଲ ବଢ଼ିବେ । ଓସାର ଶହେ ଫୁଟରୁ ବେଶି ନ କଲେ ଜାଲ ପକାଇ ମାଛ ଧରିବା ପାଇଁ ସୁବିଧା ହୁଏ । ମାଛ ପୋଖରୀଟା ଖୁବ୍ ବଡ଼ ହୋଇଗଲେ ଜାଲ ପକାଇବାରେ ତ ଅସୁବିଧା ହୁଏ, ଜଳ ପ୍ରଭୃତି ଅନାବନା ଚଢ଼ ମାଡ଼ିଗଲେ ସଫା କରିବାକୁ ମଧ୍ୟ ଅସୁବିଧା ହୁଏ । ଆଗରୁ ତ କୁହାଯାଇଛି ଯେ ଖୁବ୍ ଗଭୀର ପୋଖରୀରେ ମାଛ ଯେତେ ନ ବଢ଼ନ୍ତି ଅପେକ୍ଷାକୃତ ଅଳ୍ପ ପାଣିଥିଲେ ସେତେ ବଢ଼ନ୍ତି ।

## ମାଛଚାଷ ଉପକରଣ

ଚାଷଟିଏ ଆରମ୍ଭ କଲେ ଯେମିତି ଲଙ୍ଗଳ କଣ୍ଟିଠୁ ଆରମ୍ଭ କରି ଦଉଡ଼ିଟିଏ ପର୍ଯ୍ୟନ୍ତ ବାରଖଣ୍ଡି ଜିନିଷ ଲୋଡ଼ା ହୁଏ, ମାଛ ଚାଷ କରିବାକୁ ସେହିପରି ନାନାପ୍ରକାରର ସରୁମୋଟ ଫାସ ଥିବା ଜାଲ, ବାଲଟି, କୋଡ଼ି, ଦଉଡ଼ି, ବାଉଁଶ ଜଳକଢ଼ାଯନ୍ତ୍ର ଓ ଗୋଟିଏ ଡଙ୍ଗା—ଅନେକ ପଦାର୍ଥ ଦରକାର । କେତେବେଳେ କେଉଁ କେଉଁ ଦରକାରୀ ଯନ୍ତ୍ରପାତି ମତ୍ସ୍ୟବିଭାଗର ପରାମର୍ଶ ନେଇ ଆମେ କିଣି ପାରୁ ।

# ଲାଭ ଲୋକସାନ

ମାଛ ଚାଷରେ ଲାଭ ଲୋକସାନ କଥା ହିସାବ କଲାବେଳେ ମନକୁ ଅନେକ କଥା ଆସେ । ଚାଷର ହିସାବ ଫର୍ଦ୍ଦ ଦେଖି ନିଶ୍ଚିତ ଭାବରେ କହି ପାରିବ ନାହିଁ ଯେ ଓଡ଼ିଶାର ସବୁ ଅଞ୍ଚଳରେ ଅମୁକ ଚାଷରେ ଏତିକି ଖର୍ଚ୍ଚ ହେବ, ଏତିକି ଲାଭ ହେବ । ମାଛ ଚାଷ ହିସାବର ମଧ୍ୟ ସେଇ ଦଶା । ତେବେ ଏ କଥା ନିଶ୍ଚୟ ମାନିବାକୁ ପଡ଼ିବ ଯେ ଥରେ ପୋଖରୀ ଖୋଳି ହେଲା ପରେ କିମ୍ବା ଯଦି କାହାର ପୋଖରୀଟିଏ ଅଛି ସେଥିରେ ମାଛ ଚାଷ କଲେ ବର୍ଷକୁ ବର୍ଷ ଅନ୍ୟ ଚାଷରେ ଯେଭଳି ଖର୍ଚ୍ଚ ମାଛ ଚାଷର ସେଭଳି ଖର୍ଚ୍ଚ ନାହିଁ । ଓଡ଼ିଶାରେ ମାଛର ଆଦର ଏତେ ବେଶୀ ଯେ ତାହା ଅବିକ୍ରୀ ହୋଇ ରହିବ ନାହିଁ । ଥରେ ଯାଆଁଳ ଗୁଣ୍ଡି ଯେଉଁଗୁଡ଼ିକ ଟିକିଏ ବଡ଼ ବଡ଼ ହୋଇଗଲେ ତିନିବର୍ଷ ପର୍ଯ୍ୟନ୍ତ ହୁଏ ତ ଆଉ ଯାଆଁଳ ବି ଛାଡ଼ିବାକୁ ପଡ଼ିବ ନାହିଁ । କାରଣ ଦୁ' ବର୍ଷିଆ ତିନିବର୍ଷିଆ ମାଛ ବିକିଲେ ବେଶ୍ ଲାଭ ମିଳେ, ଅନେକ ସମୟରେ ଆମର ମନେ ହୁଏ ପାଞ୍ଚସାତ ବର୍ଷିଆ ବଡ଼ ବଡ଼ ମାଛ ବେଶି ପଇସା ଆଣିବ, କିନ୍ତୁ ପ୍ରକୃତରେ ସେଥିରେ ଲାଭ ନାହିଁ । ଛେଳି ବୁଢ଼ା ହୋଇଗଲେ ତା ମାଂସ କଡ଼ା କଡ଼ା ଲାଗେ । ମାଛ ଖୁବ୍ ବଡ଼ ହୋଇଗଲେ ଆଉ ତାର ସୁଆଦ ରହେ ନାହିଁ—ଆଦର କମିଯାଏ । ଦୁ' ବର୍ଷିଆ ତିନି ବର୍ଷିଆ ମାଛ ଧରି ବିକି ଦେଉଥିଲେ ମାଛଚାଷରେ ଲାଭ ଅଛି ।

---

ମୁଦ୍ରାକର—ଶ୍ରୀ ପ୍ରଫୁଲ୍ଲକିଶୋର ଦାସ, କୃଷକ ପ୍ରେସ, କଟକ—୧୯୫୭

